# ଆରାଧନା

(ଭକ୍ତି ସଙ୍ଗୀତ ସଂକଳନ)

ଲେଖକ ଓ ପ୍ରକାଶକ

**ଶ୍ରୀ ପ୍ରତାପ କିଶୋର ପଟ୍ଟନାୟକ**

ପ୍ରକାଶ କାଳ : ଠାକୁର ଶ୍ରୀ ଶ୍ରୀ ଅଭିରାମ ପରମହଂସ ଦେବଙ୍କ ଜନ୍ମୋତ୍ସବ,
ମାଘ ତ୍ରିବେଣୀ ଅମାବାସ୍ୟା, ତା ୨୦.୦୧.୨୦୧୫

ଅକ୍ଷର ସଜ୍ଜା : ମା’ ତାରିଣୀ ପ୍ରିଣ୍ଟର୍ସ
ଚାନ୍ଦିନୀଚୌକ, କଟକ

ପ୍ରଚ୍ଛଦପଟ : ସନ୍ତୋଷ ଦାସ

ପ୍ରାପ୍ତିସ୍ଥାନ : ଶ୍ରୀ ଅଭିରାମ ନଗର
(ନିଉ କଲୋନି), ରଙ୍ଗାଢ଼ିପା, ସୁନ୍ଦରଗଡ଼
ପିନ୍ - ୭୭୦୦୦୨

ଯୋଗାଯୋଗ : ୦[illegible]୨୨-୨୭୪୦୬୯
୯୪୩୮୦୭୭୦୫୩

ସହଯୋଗ ରାଶି : ଷାଠିଏ ଟଙ୍କା ମାତ୍ର



ଜଗଦ୍‌ଗୁରୁ ଠାକୁର
ଶ୍ରୀ ଶ୍ରୀ ଶ୍ରୀ ଅଭିରାମ ପରମହଂସ ଦେବ

କହଇ ଅଭିରାମ ବାଇ
ଅନୁଭବକୁ ସତ୍ୟ କହି ।

ଏଣୁ ଅଦ୍ୱୈତ ଭାବ କର
ଦ୍ୱୈତରେ ରହିଛି ଅନ୍ଧାର ।

ତୁମ୍ଭରି କୃପାରେ ସ୍ଥିର କଲି ହରି
କୃପା ଛଡ଼ା କିଛି ନାହିଁଟି ମୋହରି ।

ଲେଖି ଲିଭାଇବା ଶକତି ଯା'ଠାରେ
ବାଛି ମୁଁ ଶରଣ ପଶିଛି ତା'ଠାରେ ।

ସତ୍ୟ ଶାନ୍ତି ଯେ ଦୟା କ୍ଷମା
ଏ ଚାରି ହରିଙ୍କ ମହିମା ।

ତୁ ଭଗବାନ ତୁହି ଦାସ
ତୁ ସିନା ଗୁରୁ ତୁହି ଶିଷ୍ୟ ।
ତୁହି ପୂଜାରୀ ତୁ ଠାକୁର
ଅଭିନ୍ନ ତୋହର ମୋହର ।।

ବୁଝିଲେ ସର୍ବ କର୍ତ୍ତା ତୁହି
ତୋ'ଛଡ଼ା ଅନ୍ୟ କର୍ମ ନାହିଁ ।।



# ସୂଚୀପତ୍ର

# ଅଭିମତ

ଶ୍ରୀ ପ୍ରତାପ କିଶୋର ପଟ୍ଟନାୟକଙ୍କ ଭଜନ ସଂଗ୍ରହ "ଆରାଧନା" ପାଠକଲି । ୧୯୭୨ ରୁ ୧୯୭୭ ପର୍ଯ୍ୟନ୍ତ ମୁଁ ସୁନ୍ଦରଗଡ଼ ଶିକ୍ଷା ମଣ୍ଡଳାଧୀଶ ଥିଲାବେଳେ ସେ ସୁନ୍ଦରଗଡ଼ ପରିଦର୍ଶକଙ୍କ କାର୍ଯ୍ୟାଳୟରେ ସହକାରୀ ଭାବେ କାର୍ଯ୍ୟ କରୁଥିଲେ । ସେ ଜଣେ ନିରବ କର୍ମୀ ଓ ମିଷ୍ଟଭାଷୀ ଥିଲେ । ସେ ସଦ୍‌ଗୁରୁ ଅଭିରାମ ପରମହଂସଙ୍କ ଆଶ୍ରିତ ଭାବେ ଧର୍ମଭାବାପନ୍ନ ବୋଲି ଜାଣିଥିଲି । ସୁନ୍ଦରଗଡ଼ରେ ଥିଲାବେଳେ ବିଭିନ୍ନ ଧର୍ମାନୁଷ୍ଠାନରେ ତାଙ୍କର ସହଯୋଗ ମିଳିଛି ।

ତାଙ୍କର ସେହି ଧର୍ମଭାବ ଓ ଗୁରୁଦତ୍ତ ଚିନ୍ତା ତାଙ୍କ ରଚିତ ଭଜନରେ ପ୍ରକାଶ ପାଇବା ସ୍ୱାଭାବିକ । ନିଜର ଭାବନାକୁ ସେ ସହଜ ଭାବରେ ଫୁଟାଇଛନ୍ତି । ଗୋଟିଏ ଭଜନରେ ସେ କହିଛନ୍ତି "ପରଖୁଛ କେତେ ଅବା ପାରିଲା ପଣ, ପାରିବି କି ହୋଇ ପରୀକ୍ଷାରେ ଉତ୍ତୀର୍ଣ୍ଣ" (୩୫) । ଗୋଟିଏ ଗୋଟିଏ ଚିନ୍ତା ନୂଆ ନହେଲେ ମଧ୍ୟ ଭଗବାନଙ୍କ ସମ୍ବନ୍ଧରେ ସାର୍ବଜନୀନ ସତ୍ୟ ପ୍ରକାଶ କରି କହିଛନ୍ତି (୫୩) "ଫଳ ମଧ୍ୟେ ରସ ଫୁଲରେ ସୁବାସ, ଜୀବ ମଧ୍ୟେ ଆତ୍ମା ରୂପେ ପରକାଶ" । ଗୋଟିଏ ଜଣାଣରେ (୬୮) ସେ କହିଛନ୍ତି "ତାକୁ କିଏ ଅବା ପାରିବ ଧରି, ପାରିଲେ ପାରିବ ସେହି ଏକା ସିନା ଜୀଇ ଥାଉଁ ଥାଉଁ ଯେ ପାରେ ମରି ।" "ଜୀଇ ଥାଉଁ ଥାଉଁ ଯେ

ପାରେ ମରି'' ସେ କେଉଁ ଅର୍ଥରେ ବ୍ୟବହାର କରିଛନ୍ତି ମୁଁ ଜାଣେନା । ବଞ୍ଚିଥିବା ବେଳେ ଗର୍ବଶୂନ୍ୟ ହୋଇ ଅହଂକାର ରହିତ ଅବସ୍ଥା କଥା ବୋଧେ ସେ ମନରେ ଆଣିଛନ୍ତି । ଯେଉଁମାନେ ସାଧନ ଜଗତରେ ଅଛନ୍ତି, ସେମାନେ ପ୍ରାଣାୟାମ ଦ୍ୱାରା ନିଃଶ୍ୱାସ ପ୍ରଶ୍ୱାସ ନିୟନ୍ତିତ କରି ଜୀବିତାବସ୍ଥାରେ ମୃତବତ୍ ଅବସ୍ଥାରେ ରହିଥାନ୍ତି ଓ ତାଙ୍କର ଦେହସତ୍ତା ଲୋପ ପାଇଥାଏ । ଏ ଅବସ୍ଥାର ନାମ ହେଲା "Dying while living".

ବହୁ ବର୍ଷର ବ୍ୟବଧାନ ପରେ ସେ ମୋତେ ସାକ୍ଷାତ କରି ତାଙ୍କ ପୁସ୍ତକର ଅଭିମତ ଲେଖିବାକୁ କହିଥିବାରୁ ମୁଁ ପୂର୍ବ ସ୍ମୃତି ମନେ ପକାଇ ତାଙ୍କୁ ଶୁଭେଚ୍ଛା ଜଣାଉଛି ।

ଶ୍ରୀ ରଜତ କୁମାର କର
ଅନନ୍ୟ ନିକେତନ, ଏନ-୧ / ୧୮୩
ନୟାପଲ୍ଲୀ, ଭୁବନେଶ୍ୱର



# ପଦେ ଅଧେ...

ପିଲାଟି ଦିନରୁ ମୁଁ ସଙ୍ଗୀତପ୍ରିୟ । ଭଲ ଗୀତଟିଏ ଶୁଣିଲେ ଗାଇବାକୁ ଇଚ୍ଛାହୁଏ । ଗୀତ ନ ଜାଣିଥିଲେ ବି ତା'ର ସ୍ୱରକୁ ମନେ ପକାଇ ଗୁଣୁଗୁଣୁ ହୋଇ ଗାଇବାକୁ ଚେଷ୍ଟାକରେ । କେବେ ହୁଏ ତ କେବେ ନାହିଁ, କିନ୍ତୁ ମନ ଭିତରେ ତା'ର ଏକ ଛାପ ରହିଯାଏ ସବୁଦିନ ପାଇଁ ।

ସଙ୍ଗୀତ ଶିକ୍ଷା କରିବାର ସୁଯୋଗ ମୋ ଜୀବନରେ କେବେ ଆସିନାହିଁ ବା ଶାସ୍ତ୍ରୀୟ ସଙ୍ଗୀତର ରାଗ ରାଗିଣୀ ବିଷୟରେ ମୋର କିଛି ଜ୍ଞାନ ମଧ୍ୟ ନାହିଁ । ତଥାପି ମୁଁ ଗୀତ ଗାଏ । ସାମୂହିକ କାର୍ଯ୍ୟକ୍ରମରେ, ମଞ୍ଚରେ ଏବଂ ବାଦ୍ୟଯନ୍ତ୍ର ସହଯୋଗିତାରେ ମଧ୍ୟ । ପିଲାଖେଳ ଭଳି ଅଷ୍ଟମ ଶ୍ରେଣୀରେ ପଢ଼ିଲାବେଳେ ଦାସକାଠିଆ ଓ ନବମ ଶ୍ରେଣୀରେ ପଢ଼ିଲା ବେଳେ ସାଙ୍ଗମାନଙ୍କୁ ନେଇ ପାଲା ମଧ୍ୟ କରିଛି । ମୋ ଜାଣିବାରେ, ଆମ ବଂଶରେ ଏ ବିଦ୍ୟା ପୂର୍ବରୁ ନଥିଲା; କିନ୍ତୁ ଥିଲା ମୋର ମାମୁଁଘର ବଂଶରେ । ମୋର ଅଜା ୰ ନାରାୟଣ ଚନ୍ଦ୍ର ମହାନ୍ତି ଥିଲେ ତାଙ୍କ ସମୟର ଜଣେ ବିଶିଷ୍ଟ ପାଲାଗାୟକ ଓ ସେ ଥିଲେ ହରିନାଥ, ନରିନାଥ, ନିରଞ୍ଜନ କର, ବୈଷ୍ଣବ ପ୍ରଧାନ, ପରମାନନ୍ଦ ଶରଣ ଓ ବଂଶୀଧର ମିଶ୍ର ପ୍ରଭୃତି ଖ୍ୟାତନାମା ଗାୟକ ମାନଙ୍କର ସମସାମୟିକ । ଅଜାଙ୍କର ବାପା ୰ ମାଗୁଣି ମହାନ୍ତି ମଧ୍ୟ ଥିଲେ ପାଲାଗାୟକ । ତେଣୁ ଉତ୍ତରାଧିକାର ସୂତ୍ରରେ ଯଦି ସଙ୍ଗୀତର କିଛିଟା ଛିଟିକା ମୋ' ଜୀବନରେ ପଡ଼ିଥାଏ, ତେବେ ତାହା ଆସିଛି ସେହି ମାତୁଳାଳୟରୁ ।

ହାଇସ୍କୁଲ ପଢ଼ିବା ସମୟର କଥା । ପ୍ରସ୍ତାବ ଉଠିଲା ଯେ ସ୍କୁଲର ବାର୍ଷିକ ଉତ୍ସବ ପାଳିତ ହେବ ଓ ସେହି ଅବସରରେ ସ୍କୁଲର ଏକ ମୁଖପତ୍ର ପ୍ରକାଶ ପାଇବ । ସେଥିପାଇଁ ଲେଖା ଆହ୍ୱାନ କରାଗଲା ଛାତ୍ରଛାତ୍ରୀମାନଙ୍କଠାରୁ । ଲେଖାଲେଖି ଅଭ୍ୟାସ

ତ ମୋର ନଥାଏ । ଭଲକରି ରଚନାଟିଏ ମଧ୍ୟ ମୁଁ ଲେଖିପାରେନା । ପିଲାମାନେ ପାଞ୍ଚ / ସାତ ପୃଷ୍ଠାର ରଚନା ଲେଖୁଥିବା ବେଳେ ମୋ'ର ଲେଖା ମାତ୍ର ଗୋଟିଏ ପାରା ବା ଉପକ୍ରମରେ ହିଁ ସରିଯାଏ । ଆଗକୁ ଆଉ କ'ଣ ଲେଖିବି, ଭାବି ପାରେ ନାହିଁ । ଏପରି ସ୍ଥଳେ ପତ୍ରିକା ପାଇଁ ମୁଁ ଅବା ଅଧିକ କ'ଣ ଲେଖିପାରନ୍ତି ? ଭାବିଲି, ତିନି ବା ପାଞ୍ଚ ଅକ୍ଷର ବିଶିଷ୍ଟ ଗୋଟିଏ ଶବ୍ଦକୁ ନେଇ ତା'ର ଅକ୍ଷରଗୁଡ଼ିକୁ ଭାଙ୍ଗି ବା ଓଲଟ ପାଲଟ କରି ଗୋଟିଏ ଖନ୍ଦା ବା ଗୋଲକ ଧନ୍ଦା ଲେଖିବି । ଏଇ ଯେମିତି - ତିନୋଟି ଅକ୍ଷରେ ନାମ ମୋହର ... ଇତ୍ୟାଦି । କିନ୍ତୁ ଦୁଃଖର କଥା, ମୋ' ଦେଇ ସେତକ ମଧ୍ୟ ହେଲାନାହିଁ । ଅବଶ୍ୟ କୌଣସି ଅନିବାର୍ଯ୍ୟ କାରଣବଶତଃ ବାର୍ଷିକ ଉତ୍ସବ ଏବଂ ତତ୍‌ସଂଲଗ୍ନ ସମସ୍ତ କାର୍ଯ୍ୟକ୍ରମ କେବଳ ପ୍ରସ୍ତାବରେ ହିଁ ରହିଗଲା । କହିବାର ତାତ୍ପର୍ଯ୍ୟ ହେଲା, ପାଠକେ ବେଶ୍ ଅନୁମାନ କରି ପାରୁଥିବେ ଲେଖାଲେଖି ଦିଗରେ ମୋର ଯୋଗ୍ୟତା ବା ଦକ୍ଷତା କେତେ !

ତଥାପି ମୁକ୍ତକଣ୍ଠରେ ମୁଁ ଏହା ସ୍ୱୀକାର କରିପାରେ ଯେ ଜଗଦ୍‌ଗୁରୁ ଠାକୁର ଶ୍ରୀ ଶ୍ରୀ ଅଭିରାମ ପରମହଂସ ଦେବଙ୍କ ଅପାର କରୁଣାରୁ ପରବର୍ତ୍ତୀ କାଳରେ ଏ ଦୀନହୀନ ଅକିଞ୍ଚନ ଭଳି ଏକ ଶୁଷ୍କତରୁ ପଲ୍ଲବିତ ହୋଇଛି ଏବଂ ଏ ବୃକ୍ଷରେ କବିତ୍ୱର କିଛିଟା ସ୍ଫୁରଣ ହୋଇଛି, ଯାହାର ଫଳ ସ୍ୱରୂପ ଆଜି ଆତ୍ମପ୍ରକାଶ କରିବାକୁ ଯାଉଛି ଭକ୍ତି ସଙ୍ଗୀତର ଏହି କ୍ଷୁଦ୍ର ସଂକଳନ "ଆରାଧନା" । ସୁତରାଂ ଏ ପୁସ୍ତକ ରଚନା ଓ ପ୍ରକାଶର ସମସ୍ତ ଶ୍ରେୟ କେବଳ ତାଙ୍କରି । ଭାବ ତାଙ୍କରି, ଭାଷା ମଧ୍ୟ ତାଙ୍କରି, କିଛି ନୂତନତ୍ୱ ନାହିଁ ଏଥିରେ । ତଥାପି ଅନ୍ତରରୁ ପ୍ରେରଣା ଯେତେବେଳେ ଆସିଛି, ତାକୁ ଶବ୍ଦରେ ସଜାଇବାର ଓ ଭାଷାରେ ରୂପାୟିତ କରିବାର ପ୍ରଚେଷ୍ଟା କରିଛି । ଦୋଷ ତ୍ରୁଟି ତ ଅନେକ ଅଛି, ରହିବାଟା ସ୍ୱାଭାବିକ ମଧ୍ୟ । କିନ୍ତୁ ତଥାପି କେତୋଟି ଭଜନ, ଯଥା - ସୁନ୍ଦର ତୁମେ ସୁନ୍ଦର, ଘରସାରା ତୁମ ଛବି ମୁଁ ଆଙ୍କିଲି, ତୁମ ଅଗଣାରେ ଫୁଲଟିଏ ହୋଇ ବାସୁଥିବି ମହମହ, ବଜା ଥରେ ତୋ'ର ମୋହନ ବେଣୁ, ସରଜି ଏ ବିଶ୍ୱ ରହିଛ ଗୋପନେ, ଫେରାଇ ଆଣିବ ନଡ଼ିଆ ମୋ ଯେବେ, ଠାକୁରଙ୍କ ଭକ୍ତ ମହଲରେ

ତଥା ଶ୍ରୋତା ମହଲରେ ବେଶ୍ ଆଦୃତି ଲାଭ କରିଛି । କେତେକ ସ୍ଥଳରେ ଠାକୁରଙ୍କର ଶବ୍ଦାବଳୀ, ଯଥା - ତାକୁ କିଏ ଅବା ପାରିବ ଧରି, କେତେ ନଟକୂଟ ଜାଣେ ନନ୍ଦଚାଟ, ନେତ୍ର ବୁଜି ଦେଲେ ହୃଦରେ ପ୍ରକାଶ, ମୋ ନେତ୍ର ସମ୍ପତ୍ତି ଇତ୍ୟାଦି ଅନିଚ୍ଛାକୃତ ଭାବରେ ପଶିଆସିଛି ଏହି ଲେଖା ଭିତରକୁ, ଯାହାକୁ ଅନ୍ୟଥା ଗ୍ରହଣ ନ କରିବାକୁ ବିଶେଷ ଅନୁରୋଧ ।

କେବଳ ଗୋଟିଏ ଭଜନରେ ମୋ' ନିଜ ନାମ 'ପ୍ରତାପ' ଭଣତିରେ ରହିଥିଲା ବେଳେ ଅନ୍ୟ କେତୋଟିରେ ମୋ' ବୋଉର ଶ୍ରଦ୍ଧାନାମ 'ଅରକ୍ଷିତ' ବୋଲି ଭଣତି ରହିଛି । ତେଣୁ ସେହି ଭଜନ ଗୁଡ଼ିକ ଅରକ୍ଷିତ ନାମଧାରୀ ଅନ୍ୟ କୌଣସି ବ୍ୟକ୍ତିଙ୍କର ରଚନା ବୋଲି ନ ଭାବିବାକୁ ପାଠକମାନଙ୍କୁ ଅନୁରୋଧ ।

ସୁପରିଚିତ କଣ୍ଠଶିଳ୍ପୀ ଶ୍ରୀ ଭାସ୍କର ଚନ୍ଦ୍ର ପୁହାଣ ଓ ଶ୍ରୀ ରବି ଦାସଙ୍କ କଣ୍ଠରେ "ବଜା ଥରେ ତୋର ମୋହର ବେଣୁ" ଆକାଶବାଣୀ, ସମ୍ବଲପୁର କେନ୍ଦ୍ରର ବନ୍ଦନା କାର୍ଯ୍ୟକ୍ରମରେ ବହୁତ ଲୋକପ୍ରିୟ ହୋଇଥିଲା । ତା'ଛଡ଼ା କଣ୍ଠଶିଳ୍ପୀ ଶ୍ରୀମତୀ ନମିତା ଆଚାର୍ଯ୍ୟଙ୍କ କଣ୍ଠରେ "ମୋ ଇଚ୍ଛାରେ କିଛି ହୋଇନାହିଁ ମୁହିଁ", "ଶ୍ୟାମ ରୂପ ମାଧୁରୀ" ଇତ୍ୟାଦି ଅନେକ ଗୀତ ବହୁବାର ପ୍ରସାରିତ ହୋଇଛି । ତେଣୁ ଏହି ପୁସ୍ତକ ପ୍ରକାଶ ଅବସରରେ ସେହି କଣ୍ଠ ଶିଳ୍ପୀମାନଙ୍କୁ ଧନ୍ୟବାଦ ଅର୍ପଣ କରୁଛି ।

ଶାନ୍ତି ଆନନ୍ଦାଶ୍ରମ, କରମଳାର ପୂଜ୍ୟ ସାଧୁ ଶ୍ରୀ ଶ୍ୟାମାନନ୍ଦ ଦାସ ବାବାଜୀ ଓ ଶ୍ରୀ ଅନ୍ତର୍ଯ୍ୟାମୀ ଦାସ ବାବାଜୀ, ଯାହାଙ୍କର ଉତ୍ସାହ ଏହି ପୁସ୍ତକ ପ୍ରକାଶନର ଅନ୍ତରାଳରେ ବିଦ୍ୟମାନ, ସେ ମହାତ୍ମାଦ୍ୱୟଙ୍କୁ ଏହି ଅବସରରେ ବାରମ୍ବାର ପ୍ରଣାମ କରୁଛି । ଆଶ୍ରମର ଅନ୍ୟତମ ସାଧୁ ଶ୍ରୀ ପରମେଶ୍ୱର ଦାସ ବାବାଜୀଙ୍କ ସ୍ୱର ସଂଯୋଜନାରେ କେତେକ ଗୀତ ବେଶ୍ ମନଛୁଆଁ ଓ ଲୋକପ୍ରିୟ ହୋଇଥିବାରୁ, ତାଙ୍କୁ ମଧ୍ୟ ମୋ ଅନ୍ତରର କୃତଜ୍ଞତା ଜଣାଉଛି ।

ମୋର ପୂର୍ବତନ ହାକିମ ତଥା ସୁବକ୍ତା ଅଧ୍ୟାପକ ଶ୍ରୀଯୁକ୍ତ ରଜତ କୁମାର କରଙ୍କୁ ତାଙ୍କର ଅଭିମତ ପାଇଁ ଅଶେଷ କୃତଜ୍ଞତା ଜଣାଉଛି ।

ଶେଷରେ ଭକ୍ତ ଚରଣ ମହାନ୍ତି ଚାରିଟେବୁଲ୍ ଟ୍ରଷ୍ଟ ତଥା ଗାଇଡ୍ ପ୍ରେସ୍, ବାଦାମବାଡ଼ି, କଟକର ମାଲିକ ବଡ଼ଭାଇ ଅଧ୍ୟାପକ ଶ୍ରୀ କଳିଙ୍ଗ କେଶରୀ ମହାନ୍ତି ଏହି ପୁସ୍ତକ ମୁଦ୍ରଣର ଦାୟିତ୍ୱ ଗ୍ରହଣ କରିଥିବାରୁ, ତାଙ୍କ ପ୍ରତି ମୋର ହୃଦୟର କୃତଜ୍ଞତା ଜ୍ଞାପନ କରୁଛି ।

ସମସ୍ତ ଦୋଷତ୍ରୁଟି ସତ୍ତ୍ୱେ ଏହା ଅନସ୍ୱୀକାର୍ଯ୍ୟ ଯେ ଏହି ଭକ୍ତି ସଙ୍ଗୀତ ଗୁଡ଼ିକରେ କିଛି ନ ହେଲେ ବି ଭକ୍ତ ଓ ଭଗବାନଙ୍କୁ ଗୋଟିଏ ସୂତ୍ରରେ ବାନ୍ଧିବାର କିଛିଟା ଭାବାବେଗ ରହିଛି, ଯାହା ଅନୁଭବରେ ଆସେ ଗାୟନ ସମୟରେ - ସଙ୍ଗୀତରେ ରୂପାୟିତ ହେଲାବେଳେ । ପାଠକ ତଥା କଣ୍ଠଶିଳ୍ପୀମାନେ ନିଜସ୍ୱ ମହନୀୟ ଗୁଣରେ ତ୍ରୁଟି ମାର୍ଜନା ପୂର୍ବକ ପୁସ୍ତକଟିକୁ ଗ୍ରହଣ କଲେ, ଶ୍ରମ ସାର୍ଥକ ହେଲା ବୋଲି ମନେ କରିବି ।

ଠାକୁରଙ୍କର ସଦଇଚ୍ଛା ପୂର୍ଣ୍ଣ ହେଉ ଆନନ୍ଦେ ଏକବାର ହରିବୋଲ୍ ।

ଜନ୍ମୋତ୍ସବ
ତା ୨୦.୧.୨୦୧୫
ମାଘ ତ୍ରିବେଣୀ ଅମାବାସ୍ୟା

ବିନୀତ
**ଲେଖକ**



# ଲୀଳାମୟଙ୍କର ଲୀଳା ସୁମରି

ଲୀଳାମୟଙ୍କର ଲୀଳା ସୁମରି
ପ୍ରେମମୟଙ୍କର ନାମକୁ ଧରି
କୃପାମୟ କୃପା କରି ସମ୍ବଳ
କାଟିଦିଅ ମନ ତୋ ଦିନକାଳରେ
ଏହି କଥା କର ମୂଳରେ,
ଇଚ୍ଛାମୟଙ୍କର ଇଚ୍ଛାରେ କେବଳ
ଯାହା ହେବ ତୋ ମଙ୍ଗଳରେ । ୧ ।

ଏ ମାୟା ସଂସାର ବଡ଼ ବିଷମ
ରସିଲେ ବାନ୍ଧି ନେବ କାଳଯମ
ବେଳହୁଁ ହୁଅ ତୁହି ସାବଧାନ
ଖଣ୍ଡିବୁ ଯେବେ ତୋ ଭବ ବନ୍ଧନରେ
ଗୁରୁ ପାଦପଦ୍ମ ଚିନ୍ତରେ
ସେହି ଏକା ସିନା ପଥକୁ ସଙ୍ଖାଳି
ସେହି ତୋ ପରାଣ ମିତରେ । ୨ ।

ସାଧୁ ସଙ୍ଗେ କାଳ କର ହରଣ
ପାଲଟି ଯିବ ତୋର ଅଙ୍ଗମାନ
ବିଶୁଦ୍ଧ ଚିତ୍ତ ହୋଇବ ତୋହର
ମନୁ ପାପ ଲୋପ ହୋଇବ ତୋରରେ
ଭାବ ହୋଇବ ଉଦୟରେ,
ଭାବଗ୍ରାହୀଙ୍କି ତୁ ଧରିବୁ ହୃଦୟେ
ନ ରହିବ ଭବ ଭୟରେ । ୩ ।



# ବଜା ଥରେ ତୋର ମୋହନ ବେଣୁ

ବଜା ଥରେ ତୋର ମୋହନ ବେଣୁ
ଥରଟିଏ ହେଲେ ଶ୍ରବଣ ଶୁଣୁ
ଯମୁନା କୂଳରେ କଦମ୍ବ ମୂଳରେ
ବଜାଇ ଯେ ବେଣୁ ତୁ ମନ କିଣୁ । ୦ ।

ଯେ ବେଣୁରେ ତାନ ତୋଳିଲେ ତୁହି
ଉଚ୍ଚାଟ ହୁଅନ୍ତି ସେ ଗୋପ ଗୋଇ
ଯମୁନାର ଜଳ ହୋଇଯାଏ ସ୍ଥିର
ଝରିଯାଏ ପୁଷ୍ପ କୁଞ୍ଜ କାନନୁ । ୧ ।

ସଫଳ ହେଉ ଏ ଦୀନ ଜୀବନ
ଶୁଣି ଥରେ ତୋର ମୁରଲୀ ସ୍ୱନ
ତୋ ବିରହେ ମନ ପ୍ରାଣ କାନ୍ଦିଉଠୁ
ଅବିରତ ଝରୁ ନୀର ନୟନୁ । ୨ ।



# ଦେଖୁନାହିଁ ତୁମ ମୁଖଛବି

ଦେଖୁନାହିଁ ତୁମ ମୁଖଛବି ଆଉ
ଝରୁନାହିଁ ଆଉ ଆଖି ଲୁହ
କରୁଣା କିମ୍ପାଇଁ ଊଣା ମୋହ ପାଇଁ
ହେଲା କୁହ ପ୍ରଭୁ ତୁମେ କୁହ । ୦ ।

ଅସୁମାରି ମୋର ଅପରାଧ ଭାର
ତୁମେ ପରା ପ୍ରଭୁ ସର୍ବଂସହ
ନ ଜାଣକି ତୁମେ ଦୀନହୀନ ଜନେ
ଅପବିତ୍ର ଯାର ମନ ଦେହ । ୧ ।

କାମନା ବାସନା କରିଦିଅ ଚୂନା
ନ ହୁଅ ବିମନା ପ୍ରାଣପ୍ରିୟ
ଗଢ଼ି ନିଅ ମୋତେ ମନ ମୁତାବକ
ସେବୁଥିବି ତୁମ ପଦଦ୍ୱୟ । ୨ ।

କର ମୋତେ ତୁମ ଦାସର ଦାସ ହେ
ନୟନ ପଥେ ମୋ ତୁମେ ଥାଅ
ନାହିଁ ଅନ୍ୟ ବାଞ୍ଛା ତୁମରି ସଦିଚ୍ଛା
ପୂରଣ ହେଉ ହେ ଇଚ୍ଛାମୟ । ୩ ।



# କି ସୁନ୍ଦର ସେ ରୂପ ସତେ

କି ସୁନ୍ଦର ସେ ରୂପ ସତେ
ନ ଦେଖିଲେ କି ତୁ ଯିବୁ ପରତେ
ସାରା ଜଗତର ଶୋଭା କିବା ଠୁଳ
ହୋଇଛି ତାହାର ଚରଣ ପ୍ରାନ୍ତେ । ୦ ।

କୋଟି କାମ ନୋହିବେ ସରି
ସତୀକୁଳ ମରିବେ ଝୁରି
ତା ବାଙ୍କ ଚାହାଣୀ ନେବ ମନ କିଣି
ବିଷ ପରି ସବୁ ଲାଗିବ ତୋତେ । ୧ ।

ତା ବେଣୁର ମଧୁ ମୂର୍ଚ୍ଛନା
ପାଗଳିନୀ କରିବ ସିନା
ନିନ୍ଦା ଅପବାଦ ଭୟ ନ ରହିବ
ତା ସଙ୍ଗ ସୁଖ ଖୋଜିବୁ ନିରତେ । ୨ ।

ରଙ୍ଗାଧରେ ସେ ମନ୍ଦ ହାସ
ଦୁଷ୍ଟ ଦେଖି ମଣିବେ ତ୍ରାଶ
ପାଇ ସେ ପୀୟୂଷ ଭକ୍ତ ହେବେ ତୋଷ
ଭୁଲିଯିବେ ସଂସାର ଦୁଃଖ ଯେତେ । ୩ ।

ଭାଗ୍ୟେ ଥିଲେ ମିଳିବ ଭେଟ
ଚାଲ ଯିବା ଯମୁନା ତଟ
କେତେ ନଟକୂଟ ଜାଣେ ନନ୍ଦଚାଟ
ଦେଖି ଆସି ସଖୀ କହିବୁ ମୋତେ । ୪ ।

# ଦୟାମୟ ଦୀନବନ୍ଧୁ

ଦୟାମୟ ଦୀନବନ୍ଧୁ ଦୟାର ଠାକୁର
କରିବି କରମ ତୁମ କର ପରିକର । ୧ ।

ହେବି ସଂସାର ବିରାଗୀ ତବ ଅନୁରାଗୀ
ପାଦପଦ୍ମ ସେବା ପାଇଁ ବସିଥିବି ଜଗି । ୨ ।

ପ୍ରତିକୂଳେ ନାବ ବାହି ଯିବି ତୁମ୍ଭ ପାଶ
ଦୟାର୍ଦ୍ର ହୃଦୟେ ପ୍ରଭୁ ! କର ହେ ଆଶିଷ । ୩ ।

ପାଶୋରିବି ଆପଣାରେ ତୁମ୍ଭ ଭାବେ ମାତି
ବିତି ଯିବ କେତେ ଦିନ କେତେ କେତେ ରାତି । ୪ ।

ତବ ପ୍ରେମ ସାଗରେ ମୋ ଜୀବନ ତଟିନୀ
ଲୀନ ହେବ ଦୀନବନ୍ଧୁ ଘେନ ମୋ ଦୟିନୀ । ୫ ।

ଅରକ୍ଷିତ ଦାସ ରକ୍ଷାକାରୀ ଜଗଦୀଶ
ଭୟ ଆଉ କାହିଁ ପାଇଁ କରୁରେ ମାନସ । ୬ ।



ମୁଁ' ରୁ ଚାରିଅଙ୍କ ନିଅ,
'ତ' ଅକ୍ଷର ତଳେ ଦିଅ ।

# ଘର ସାରା ତୁମ ଛବି ମୁଁ

ଘର ସାରା ତୁମ ଛବି ମୁଁ ଆଙ୍କିଲି
ନ ପାରିଲି ହୃଦେ ବସାଇ
ଯେତେ ଚାହିଁଲେ ବି ତୁମ ପ୍ରେମ ରସେ
ନ ପାରିଲି ମନ ରସାଇ । ୦ ।

ତୁମ ପ୍ରୀତିକର୍ମ କରି ଦିବାନିଶି
ତୁମକୁ ଟିକିଏ ଦେବା ପାଇଁ ଖୁସି
କଲି ଯେତେ ଚେଷ୍ଟା ନ ଥିବାରୁ ନିଷ୍ଠା
ନ ପାରିଲି ହସି ହସାଇ । ୧ ।

ନ ହଟିଲା ମନ ବିଷୟା ବିଷରୁ
ନ ମେଣ୍ଟିଲା ତୃଷ୍ଣା ବିଷ କଳସରୁ
ଯେତେ ମୋ ପ୍ରୟାସ ତୋ ପୀୟୂଷ ପାନେ
ହେଲା ବୃଥା, ଦେଲ ଭସାଇ । ୨ ।

ଦିନେ ହେଲେ ନ ଆସିଲ ମୋ ସପନେ
କେମିତି ଜାଣିବି ରଖି ଅଛ ମନେ
ସହଜେ ଏ ମନ ବୁଝେ ନାହିଁ ଧନ
- ଦିଅ ତୁମେ କଷି କଷାଇ । ୩ ।

ଜାଣେ ମୁଁ ଏ ଘର ହୋଇଛି ଅସନା
ବସିବ କେମିତି ନାହିଁ ତ ବାସନା
ମୋ ବଶରେ ନାହିଁ ଦେବି ମୁଁ ସଜାଇ
ସାଜି, ବସ ପାଦେ ବସାଇ । ୪ ।



# ଜୀବନ ନଉକା

ଜୀବନ ନଉକା ଚଳାଏ ଯିଏରେ
ଯିଏ ଧରିନିଏ ହାତ
ସେହି ମୋର ଗୁରୁ ସେହି ମୋର ନାଥ
ସେହି ତ ଜଗତନାଥ । ୦ ।

ଯାହାର ଇଙ୍ଗିତେ ଚଳଇ ଜଗତ
ଚନ୍ଦ୍ର ସୂର୍ଯ୍ୟ ହେଉଥାନ୍ତି ଆତଯାତ
ବହଇ ମରୁତ ଝରଇ ଅମୃତ
ଲୀଳା ଯାର ଅବିଦିତ । ୧ ।

ନୀଳ ନିଧି କୂଳେ ପୁଣ୍ୟ ନୀଳାଚଳେ
ନିରବଧି ଯିଏ ଭକତ ସଙ୍ଖୋଳେ
ବାରମାସେ ତେର ଯାତ ହୁଏ ଯା'ର
ନୀଳଚକ୍ରେ ଉଡ଼େ ନେତ । ୨ ।

ହାତ ନ ଥାଇବି ଯିଏ ସବୁ କରେ
ପାଦ ନାହିଁ ବିଜେ ଅନ୍ତରେ ବାହାରେ
କର୍ଣ୍ଣ ନାହିଁ ସତ ଭକତ ଆରତ
ଶୁଣି, ବଢ଼ାଏ ଯେ ହାତ । ୩ ।

ଯା ନାମ ଧରିଲେ ଖଣ୍ଡଇ ପାତକ
ଛାଡ଼ି ପଳାଇଣ ଯାଏ କୃତାନ୍ତକ
ଯା କଳା ବଦନ ଦରଶନ ଲାଗି
ଝୁରି ମରେ ଅରକ୍ଷିତ । ୪ ।



# ମୋ ଇଚ୍ଛାରେ କିଛି

ମୋ ଇଚ୍ଛାରେ କିଛି ହୋଇନାହିଁ ମୁହିଁ
ଯାହାତ କରିଛ ତୁମେ
ଦେଇଛ ଜନମ ଦେଇଛ କରମ
ସୁଖ ଦୁଃଖ ଧରାଧାମେ । ୦ ।

ଝରିଯାଏ ତୁମ କରୁଣାର କଣା
ବହିଯାଏ ସିନା ଅମୃତ ଝରଣା
ସୁଖ ବୋଲି କିଛି ଖୋଜି ନ ପାଏ ମୁଁ
ଯାହା ଅଛି ତୁମ ନାମେ । ୧ ।

ତୁମ କାମ କରି ଜୀବନ ବିତିବ
ତୁମ ନାମ ଧରି ପରାଣ ଛାଡ଼ିବ
ଜୀବନେ ମରଣେ ତୁମରି ଚରଣେ
ରଖିବ ତୁମରି ଧାମେ । ୨ ।

ତୁମେ ସିନା ପ୍ରଭୁ ଜୀବର ଜୀବନ
ଅଗତିର ଗତି ତୁମେ ନାରାୟଣ
ଏ ଭବ ସାଗରୁ କେ କରିବ ପାରି
କାହାକୁ ମୁହିଁ ନ ଜାଣେ । ୩ ।



# ସୁନ୍ଦର ତୁମେ ସୁନ୍ଦର

ସୁନ୍ଦର ତୁମେ ସୁନ୍ଦର
ହେ ଅଭିନ୍ନ ସୁନ୍ଦର
ହେ ଅଭିନ୍ନ ସୁନ୍ଦର ।୦।

ସୃଷ୍ଟି ତୁମର ସୁନ୍ଦର
ଲୀଳା ରଚନା ସୁନ୍ଦର
ସବୁଠୁ ସୁନ୍ଦର ହାସ୍ୟ ମଧୁର
ହେ ଅଭିନ୍ନ ସୁନ୍ଦର ।୧।

ସୁନ୍ଦର ତୁମ ବିଚାର
ନାହିଁଟି ପାତର ଅନ୍ତର
ନାହିଁ ଆପଣାର ନାହିଁ କେହି ପର
ହେ ଅଭିନ୍ନ ସୁନ୍ଦର ।୨।

ଭକତ ତୁମର ସୁନ୍ଦର
ଭାବଟି ତାହାର ସୁନ୍ଦର
ଭକ୍ତି ପ୍ରେମ ନୀର ବହେ ଧାର ଧାର
ହେ ଅଭିନ୍ନ ସୁନ୍ଦର ।୩।

ନାମ ଗୋଟି ତୁମ ସୁନ୍ଦର
ଭଜନ ତା'ଠାରୁ ସୁନ୍ଦର
ନବୀନ ସୁନ୍ଦର ବରଜ ସୁନ୍ଦର
ହେ ଅଭିନ୍ନ ସୁନ୍ଦର । ୪ ।

ଧାମ ଗୋଟି ତୁମ ସୁନ୍ଦର
ଶାନ୍ତି ବିରାଜେ ନିରନ୍ତର
ପବିତ୍ର ସକଳ ବାୟୁ ଜଳସ୍ଥଳ
ହେ ଅଭିନ୍ନ ସୁନ୍ଦର । ୫ ।

ଅର୍ଚ୍ଚନ ବନ୍ଦନ ସୁନ୍ଦର
ପ୍ରସାଦ ସେବନ ସୁନ୍ଦର
ଚିତ୍ତରେ ଚିନ୍ତନ ଧ୍ୟାନ ଦରଶନ
ସବୁ କିଛି ତୁମ ସୁନ୍ଦର । ୬ ।



ମୁଁ କରୁଛି ବୋଲି ଯାହା
ଏ ସିନା ଅଟେ ତୋର ମାୟା ।
ଏଣୁ ମୁଁ କାର ଗୋଟି ତୋର
ମୋ' ଅର୍ଥେ ଅର୍ପଣ ତୁ କର ।।

# ଶ୍ୟାମ - ରୂପ ମାଧୁରୀ

ଶ୍ୟାମ - ରୂପ ମାଧୁରୀ
ଦେଖିଲା ବେଳୁଁ ମୋ ମନ
ହେଉଛି ଘାରି । ୦ ।

କାହିଁରେ ନ ଲାଗେ ମନ
ହୁଏ ସଦା ଛନ୍ନ ଛନ୍ନ
ବିଜୁଳି ଯେସନେ ଘନ ବକ୍ଷ ବିଦାରି । ୧ ।

ଅଙ୍ଗବାସ ଯାଏ ଫିଟି
ପାଦ ପଡୁଥାଏ ଝୁଣ୍ଟି
ରସାତଳେ ଯାଏ ଲୋଟି ଫିଟି କବରୀ । ୨ ।

ନ ସ୍ଫୁରେ ମୁଖୁଁ ବଚନ
ବହଇ ଖର ପବନ
ଲୋତକ ଢାଳି ନୟନ ମରୁଛି ଝୁରି । ୩ ।

ରୋମାଞ୍ଚିତ ଅପଘନ
କ୍ଷଣ କ୍ଷଣକେ ବିବର୍ଣ୍ଣ
ସ୍ୱେଦବାରି ଘନ ଘନ ପଡୁଛି ଝରି । ୪ ।

ଯେ ଯାହା କହନ୍ତୁ ପଛେ
ତା' ସଙ୍ଗ ସୁଖ ମୁଁ ଇଚ୍ଛେ
ଅରକ୍ଷିତ ଗୀତ ରଚେ ତା ପାଦ ଧରି । ୫ ।



# ତୁମେ ପରା ମୋର

ତୁମେ ପରା ମୋର ପାଶେ ପାଶେ ଅଛ
କିମ୍ପାଇ ନ ଦିଅ ଦେଖା
ତୁମେ ପରା ମୋର ପାଶେ ପାଶେ ଅଛ
ଲାଗେ କିଆଁ ଏକା ଏକା । ୧ ।

ତୁମ ଚରଣରେ ଧ୍ୟାନ ନ ଲାଗଇ
ମନ ଧାଏଁ ବିଷୟାକୁ
ତୁମ ପରା ପ୍ରଭୁ ଥାଉଁ ଥାଉଁ ମୋର
କହିବି ଅବା କାହାକୁ । ୨ ।

ଅମୃତରେ ବିଷ ଦେଖଇ ଏ ମନ
ଗଙ୍ଗା ସ୍ନାନରେ କି ଲାଭ ।
ତୁମ ମନ ତୁମେ ନ କଲେ ଶାସନ
ଜନମ ବୃଥା ହୋଇବ । ୩ ।

ଅଧାରୁ ଅଧିକ କାଳ ବିତିଗଲା
ହେବ ଆଉ କେତେ ଦିନେ ?
ହେବ କି ନ ହେବ କହିଦିଅ ପ୍ରଭୁ
ନ ଭାବିବି ଆଉ ଦିନେ । ୪ ।

ଯାଏ ନର୍ଦ୍ଦମାକୁ ଯାଏ ନରକକୁ
ଯା ହେଉଛି ହେଉଥାଉ
ପଚାରିଲେ କେହି କହିବି ମୋ କର୍ମ
ତୁମକୁ ନିନ୍ଦା ନ ହେଉ । ୫ ।

ଏତିକି ମୋ ଦୁଃଖ କାଳେ କେବେ କେହି
ମୋ ଅବସ୍ଥା ଦେଖି ତୋତେ,
- କରି ଦେବ ନିନ୍ଦା କହିବ ପାଷାଣ
କୃପା ନ କଲାରୁ ମୋତେ । ୬ ।

ମନରୁ ମଇଳା ସଫା ନ ହେଉଛି
ଲୋଡ଼ା ଯାହା ତୁମ ପାଇଁ
ତୁମ କୃପା ବାରି ବହିଲେ ଜୀବନେ
ସବୁ ପାପ ଯାଏ ଧୋଇ । ୭ ।

ନ ମାଗିବି କିଛି ଧନ ବଇଭବ
କୃପାନେତ୍ରେ ବାରେ ଅନା
ତୁମେ ମୋର ଧନ ତୁମେ ମୋ ଜୀବନ
ତୁମେ ମୋ କାଳିଆ ସୁନା । ୮ ।



# ନିଜେ ଆସି ନ ଦେଲେ ତୁ

ନିଜେ ଆସି ନ ଦେଲେ ତୁ ଧରା
(ତୋତେ) ଧରିବାକୁ କି ଅଛି ମୋ ଚାରା । ୦ ।

କହରେ କାଳିଆ କହ କହ ମୋତେ
କେମନ୍ତେ ଲଭିବି ମୁହିଁ ତୋତେ
ନଦିଶେ ଉପାୟ ଚଞ୍ଚଳ ବତାଅ
ବେଳ ତ ଗଡ଼ି ଯାଉଛି ପରା । ୧ ।

ତୋ ମାୟାରେ ବଣା ବ୍ରହ୍ମା ହର
କି ସାଧନ କରିବି ମୁଁ ଛାର
ଏତିକି ମାଗୁଣି ପାଦେ ଚିନ୍ତାମଣି
ନ ପାଶୋରିବ ଦୁଃଖ ପାଶୋରା । ୨ ।

ଯେଣିକି ନୟନ ଯିବ ମୋର
ନୟନ ପିତୁଳା ଥିବ ମୋର
ନୟନାଭିରାମ ଅଭିରାମ ରୂପ
ସାଇତି ରଖିବି ହୃଦକାରା । ୩ ।



# ତୁମ୍ଭ ପରା ପ୍ରଭୁ ଥାଉଁ ଥାଉଁ

ତୁମ୍ଭ ପରା ପ୍ରଭୁ ଥାଉଁ ଥାଉଁ ମୋର
କାହାକୁ ମୁଁ ଆଉ ଡାକିବି ?
ପର ପୁରୁଷରେ ପୀରତି କରିଲେ
ଅସତୀ ମୁଁ କି ନ ହୋଇବି । ୦ ।
ତୁମ୍ଭ ପାଦତଳେ ଜୀବନ ବିକିଛି
ମୋର ବୋଲିବାକୁ ନାହିଁ ଆଉ କିଛି
ତାରିଲେ ତାରିବ ମାରିଲେ ମାରିବ
ମଥା ନତ କରି ସହିବି । ୧ ।
ମଉଳିବ ପଛେ ପୂଜାଫୁଲ ମୋର
ଜଳି ଜଳି ଧୂପ ଦୀପ ହେବ ଖାର
ନ ହେବି କାତର ମନ କରି ସ୍ଥିର
ତୁମ ପଥ ଚାହିଁ ବସିବି । ୨ ।
ବେଦନା ବୀଣାର ବେସୁରା ରାଗିଣୀ
ତୋଳି ଗାଇଲେ ମୁଁ ତବ ଆଗମନୀ
ଗୋପନ ମନର କଥା କେ ବୁଝିବ
କାହା ଆଗରେ ମୁଁ କହିବି । ୩ ।
ତୋହ ଠାରୁ ବଡ଼ ଅଛିକି ଜଗତେ
ପାରିବୁ କି କହ ଦେଖାଇ ତୁ ମୋତେ
ଯେତେ ଫନ୍ଦା କଲେ ପାରିବୁନି ଠକି
ତୋତେ କେବେ ମୁଁ ନ ଛାଡ଼ିବି । ୪ ।
ତୁହି ପରା ମୋର ଜୀବର ଜୀବନ
ମୁଁ ଅଟେ ଚାତକ ତୁହି ନବଘନ
ଯେବେ ପର କରି ଦେବ ଶିରୀହରି
ଆଉ କାହାର ମୁଁ ହୋଇବି ? । ୫ ।



# ଏଡ଼େ ଭାଗ୍ୟ ମୋର ହେବକି

ଏଡ଼େ ଭାଗ୍ୟ ମୋର ହେବକି
କୃଷ୍ଣ ନାମ ଭଜି ଜୀବ ଯିବକି ?
ଚିରକାଳ ପାଇଁ ଏ ନୟନ ଦୁଇ
ବୁଜି ହୋଇଯିବ ତା' ରୂପ ଦେଖି । ୦ ।

ଯେଉଁ ନାମ ଅମୃତୋପମ
ଯେ ରୂପ ନୟନାଭିରାମ
ଯେ ନାମ ସ୍ମରଣ ଯେ ରୂପ ଦର୍ଶନ
କରି ତରିଗଲେ କେତେ ପାତକୀ । ୧ ।

ନ ଜାଣେ ମୁଁ ଧର୍ମ ଅଧର୍ମ
କରିନାହିଁ ତା ପ୍ରୀତି କର୍ମ
କେବଳ ଶରଣ ପଶିଛି ଚରଣ -
କମଳେ କେତେ ଭରସା ମୁଁ ରଖି । ୨ ।



# ଚକା ଆଖି ହେ ! ତୁମ ବିନା କେ

ଚକା ଆଖି ହେ ।

ତୁମ ବିନା କେ ମୋର ଅଛିକି ହେ । ୦ ।

କିଏ କହେ ତୋତେ ପାଷାଣ ବୋଲି
କିଏ କହେ ତୁହି ନ ପାରୁ ଚଳି
କହିଲେ କହିବ ହୃଦୟ ମନ୍ଦିର
ଖୋଲି ଯେ ନ ଥିବ ଦେଖି ହେ । ୧ ।

କିଏ କହେ ତୋର ନ ଥାଇ କାନ
କହିଲେ କହିବ ଏକା ସେ ଜନ
ଯେ ପରାଣ ଖୋଲି କରିନି ଗୁହାରୀ
ପାଦ ଧୂଳି ନାହିଁ ମାଖି ହେ । ୨ ।

କିଏ କହେ ତୁ ନ କହୁ ବଚନ
ଶୁଣି ନାହିଁ କି କେବେ ତା'ର କାନ
ତେଜି ବୃନ୍ଦାବନ ଭକତ ପାଇଁକି
ଆସିଲ ଦେବାକୁ ସାକ୍ଷୀ ହେ । ୩ ।

କେ କହେ ଆନନ୍ଦ ବଜାରେ ବୁଲି
କାହିଁ କୈବଲ୍ୟ ଖାଲି ଭାତ ଡାଲି
କହିଲେ କହିବ ସେହି ଏକା ସିନା
ଯା ତୁଣ୍ଡ ନ ଥିବ ଚାଖି ହେ । ୪ ।

ଯିଏ ଯାହା ପଛେ କହିଲେ କହୁ
ତୁ ମୋର ମୁଁ ତୋର ହେ ମହାବାହୁ
ନ ଶୁଣୁ ମୋ କାନ କାହାରି ବଚନ
(ଜୀବ) ଯାଉ ପଦେ ଚିତ୍ତ ରଖି ହେ । ୫ ।



ହରି ସର୍ବଭୂତେ ଅଛନ୍ତି ସର୍ବେ ହରିଙ୍କ ପୁତ୍ର,
କାଟି କରି ଯଦି ଦେଖିବ ସବୁ ଏକ ରକତ ।

# ମୋ ପରି ପତିତ

ମୋ ପରି ପତିତ ଜଗତ୍ରେ ନାହିଁ
ଆହେ ପତିତ ପାବନ
ସବୁ ଜାଣି ଯେବେ ପାଦେ ଠେଲି ଦେବ
କି ଲାଭ ଥାଇ ଜୀବନ । ୦ ।

ଏ ମୋର ମାନସ ବିଷୟାର ରସ
କରୁଥାଇ ସଦା ପାନ
ତୋ ପ୍ରେମ ପୀୟୂଷ ମଣଇ ସେ ବିଷ
ଚକ୍ରବାକ ଚନ୍ଦ୍ର ସମ । ୧ ।

କି ଅବା କହିବି କେତେ ବା ଶୁଣିବି
ଦେଖି ଏ ପାପ ଶ୍ରବଣ
ପର ନିନ୍ଦା ଶୁଣି ବଧିର ହେଲାଣି
ନ ଶୁଭେ ସାଧୁ ବଚନ । ୨ ।

ଧନ ଦାରା ସୁତା ପାଇଁ ଅବିରତ
କାନ୍ଦି କାନ୍ଦି ଏ ନୟନ
ଶୁଖିଛି ଲୋତକ ବିନ୍ଦୁଏ ନ ଗଢ଼େ
ଧୋଇବାକୁ ତୋ ଚରଣ । ୩ ।

ମୋର ପାଦ ବେନି ଥକି ତ ଗଲେଣି

ବିପଥେ କରି ଗମନ

ଚକ ନ ଗଡ଼ଇ ଚଳିବ କି ରଥ

କରିବାକୁ ତୀର୍ଥାଟନ । ୪ ।

ପରସ୍ୱ ହରଣେ ପରର ପୀଡ଼ନେ

ଯେ କର ଯୁଗ ନିପୁଣ

ନ ଆସେ ମନକୁ କରିବେ କି ସତେ

ପ୍ରଭୁ କାର୍ଯ୍ୟ ସମ୍ପାଦନ । ୫ ।

ହୋଇଲାଣି ଅଠା ଚାଖି ଚାଖି ମିଠା

ଏ ରସନା ରାତିଦିନ

ନ ଲେଉଟେ ଥରେ ତୋ ପବିତ୍ର ନାମ

କରିବାକୁ ଉଚ୍ଚାରଣ । ୬ ।



ଲଜ୍ଜା ନ ହୋଇବ ତୁମ୍ଭଙ୍କୁ ଯେପରି
ମୋତେ ରଖିଥାଅ ହରି ସେହିପରି ।

# ଅଭିନବ ସୁନ୍ଦର

ଅଭିନବ ସୁନ୍ଦର ହେ ଅଭିରାମ
ଅପୂର୍ବ ମୂରତି ନିନ୍ଦେ କୋଟି କୋଟି କାମ । ୦ ।

ଚାହିଁଲେ ଥରେ ତୋ ମୁଖ
ଘୁଞ୍ଚିଯାଏ ସବୁ ଦୁଃଖ
ହୃଦ ତଟେ ଉଛୁଳେ ମୋ ତୁମରି ପ୍ରେମ । ୧ ।

ଅଙ୍ଗ ଶୋଭା କି ବର୍ଣ୍ଣିବି
ଭାଷା ପାଏ ନାହିଁ କବି
ଅନ୍ତର ଯାଏ ତା ଦ୍ରବି ହେ ଅନୁପମ । ୨ ।

କି ଗୁଣ ଗାଇବି ତୋର
ତୁ ପରା ଗୁଣ ସାଗର
ପୂଜା ପାଉଥାଅ ବସି ସେ ଶାନ୍ତିଧାମ । ୩ ।

ଏତିକି ମୀନତି ମୋର
ଜଣାଉଛି ଶ୍ରୀ ଛାମୁର
ନ ଯିବ ମନୁ ପାଶୋର ହେ ପରଂବ୍ରହ୍ମ । ୪ ।



# ଆରେ ମନ, କାହିଁକି ହେଉ

ଆରେ ମନ, କାହିଁକି ହେଉ ବାଉଳା
ଇଚ୍ଛା ନାହିଁକି ଦେଖିବାକୁ ତାଙ୍କ ଲୀଳା । ୦ ।

ମିଛ ମାୟା ସଂସାରରେ ହେଉ ତୁ ବାଇ
ଦିନେ ହେଲେ ନ ଭଜିଲୁ କଳା କହ୍ନାଇ
ବେଳ ଗଡ଼ିଗଲାଣି    ନ ଖୋଜିଲୁ ତୁ ପାଣି
ମରୀଚିକା ପଛରେ    ଧାଇଁ ତୁ ଥକିଲୁଣି
କହିଲୁ ଦେଖି କାହା    ତୃଷା କି ମେଣ୍ଟିଲାଣି
ଦୃଷ୍ଟି ଅଗ୍ରେ ଖେଳନ୍ତି ଦେଖ ଚକାଡୋଳା । ୧ ।

ଗର୍ବ ଅଭିମାନ ହିଂସା ମିଥ୍ୟା କପଟ
ସବୁ ଛାଡ଼ି ସଫା କର ତୋ ଚଲା ବାଟ
ପାଇବୁ ପ୍ରେମରସ    କର ଚଞ୍ଚଳ ଚାଷ
ବାଛି ଦିଅ ଯତନେ    ଯେତେ ବିଲୁଆ ଘାସ
ପ୍ରଭୁଙ୍କ ଜୟ ଘୋଷ    କର ନିଶି ଦିବସ
ହେଲା କଲେ ବୁଡ଼ିଯିବ ନିଶ୍ଚେ ତୋ ଭେଳା । ୨ ।

ବାହାର ଛାଡ଼ି ଭିତରେ କର ଦର୍ଶନ
ହୃଦ ସିଂହାସନେ ବିଜେ ଚକାନୟନ
ଖଟ ପଦ୍ମପୟରେ    ତେଜି ତୁ ଚିନ୍ତା ଦୂରେ
ପୂଜା କର ତୁ ବସି    ଷୋଡ଼ଶ ଉପଚାରେ
ଯେତେକ କର୍ମଫଳ    ଭୁଞ୍ଜାଅ ଯତନରେ
ଗଳାମାଳା କର ତାଙ୍କୁ ହୋଇ ଲଙ୍ଗଳା । ୩ ।



# ନିଜ ପାଇଁ ମୋର

ନିଜ ପାଇଁ ମୋର ଟିକିଏ ମାତର
ନାହିଁ ଟି ମନରେ ଦୁଃଖ
ଦୁଃଖ ଖାଲି ସିନା ମୋ ପ୍ରଭୁଙ୍କ
ଠାରେ ଲାଗିବ ବୋଲି କଳଙ୍କ । ୧ ।

ନ ହେଲେ ନରକ କରିବାକୁ ଭୋଗ
ଟିକେ ମାତ୍ର ନାହିଁ କୁଣ୍ଠା
ବଞ୍ଚିବାକୁ ଦିନ କରି ଅନଶନ
ଅବା ଗୋଟାଇ ଅଇଁଠା । ୨ ।

କରି କୁ-କରମ ଅର୍ଜିବାକୁ ଧନ
ଖାଇବାକୁ ମାଡ଼ଗାଳି
ପିନ୍ଧିବାକୁ ଛତ୍ରେ ଅପମାନ ମାଳା
ବୋଲିବାକୁ ଚୂନକାଳି । ୩ ।

ଆଶ୍ରିତ ଜନକୁ ନିନ୍ଦା ହେଲେ ତାହା
    ନୋହିବଟିକି ତୁମ୍ଭଙ୍କୁ
ଡାକିବେ କି ଭକ୍ତମାନେ ଆଉ ଧରି
    ଦୀନ ବାନ୍ଧବ ନାମକୁ । ୪ ।

ତୁମ୍ଭ ଯଶବାନା ଉଡୁଥିବ ସିନା
    ଦେଖି ହେବି ହୃଷ୍ଟମନା
ଭୁଲି ଦୁଃଖସୁଖ ପାଦପଦ୍ମ ରଙ୍କ
    ହେବି ଏତିକି କାମନା । ୫ ।

ଅରକ୍ଷିତ ମୁହିଁ ରଖ ଭାବଗ୍ରାହୀ
    ନ ଘେନ ମୋ ଅପରାଧ
ମୁଁ ସିନା ବାମନ କରିଅଛି ମନ
    ହସ୍ତେ ଧରିବାକୁ ଚାନ୍ଦ । ୬ ।



ତୁମ୍ଭ ନାମାମୃତ ଉଚ୍ଚାରୁ ଏ ମୁଖ
ଘୁଞ୍ଚିଯାଉ ଜନ୍ମ ଜନ୍ମାନ୍ତର ଦୁଃଖ ।
ତୁମ୍ଭ ଭାବେ ନେତ୍ରୁ ବହିଯାଉ ନୀର
ତିନ୍ତି ଯାଉ ଥାଉ ଏହି କଳେବର ।।

# ସବୁ ଥାଇ କିଛି

ସବୁ ଥାଇ କିଛି ନ ଥିଲା ପରି ମୁଁ
କରୁ ଅଛି ଅନୁଭବ
ଏ ସାରା ସଂସାର ଦିଶୁଛି ଅନ୍ଧାର
ନ ପାଏ ତୁମରି ଠାବ । ୦ ।

ପାଶେ ପାଶେ ଥାଇ ନ ଦେଲ ଦର୍ଶନ
କେମନ୍ତେ ବଞ୍ଚିବି ଦିନ,
ହୃଦ ପଦ୍ମ ବିକଶିତ ନ ହେଲେ କି
ଥୟ ହେବ ବାଇମନ
ଭାବ ଭକ୍ତି ପ୍ରେମ କାହୁଁ ମୁଁ ପାଇବି
ଦେଇଥିଲେ ତ ପାଇବ । ୧ ।

ଯେତେ ଯାହା ସବୁ ଦେଇଅଛ ମୋତେ
ନାହିଁ ତହିଁ ପ୍ରୟୋଜନ
ନିଅ ତୁମ୍ଭ ଧନ ବନ୍ଧୁ ପରିଜନ
ନିଅ ମାନ ଅପମାନ
ତୁମ୍ଭେ ସର୍ବ ଶୁଭ ତୁମ୍ଭେ ମୋ ବାନ୍ଧବ
ତୁମ୍ଭେ ସିନା ମୋ ଗରବ । ୨ ।



# ଯେତେ ପାର ଦୁଃଖ

ଯେତେ ପାର ଦୁଃଖ ଦିଅ, ମହାପ୍ରଭୁ
ଯେତେ ପାର ଦୁଃଖ ଦିଅ
କରିବିନି ଅଳି ଦିଅ ସୁଖ ବୋଲି
ସୁଖରେ ନାହିଁ ମୋ ପ୍ରିୟ । ୦ ।

ଅଧରରୁ ମୋର ପୋଛି ଦେଇ ହସ
ଦିଅ ହେ ଆଖିରେ ଲୁହ
ଯେ ଲୁହରେ ମୁହିଁ ଦେଖିବି ତୁମକୁ
ଅନ୍ତରରେ ବହି ସ୍ନେହ, ମହାପ୍ରଭୁ । ୧ ।

ଧନ ଜନ ପଦ ସବୁ କାଢ଼ି ନେଇ
କର ପଥର ଭିକାରୀ
ଯେ ବେଶେ ଦେଉଳ ଦୁଆରେ ତୁମର
ଉଭା ହେବି ଝୁଲା ଧରି, ମହାପ୍ରଭୁ । ୨ ।

ଅନାହାରେ ଦିନ ଯାଉ ମୋର ବିତି
ତୁମ୍ଭ ନାମ ଗାଇ ଗାଇ
ସେତିକି ମୋ ସୁଖ ତା' ଠାରୁ ଅଧିକ
ଆଉ କିଛି ଲୋଡ଼ା ନାହିଁ, ମହାପ୍ରଭୁ । ୩ ।



# ପାଇଛି ପ୍ରଭୁ ହେ

ପାଇଛି ପ୍ରଭୁ ହେ
ତୁମ ପାଦ ସେବା
ସୁଯୋଗ ମୁଁ ପାଇଛି ....
ପ୍ରଭୁ ସୁଯୋଗ ମୁଁ ପାଇଛି
ବଞ୍ଚିତ କରିବ ନାହିଁ କୃପାମୟ
ସେବା ପାଇଁ ମୁଁ ବଞ୍ଚିଛି । ୦ ।

କାମିନୀ କାଞ୍ଚନ ବନ୍ଧୁ ପରିଜନ
ଲୋଡ଼ା ନାହିଁ ପ୍ରଭୁ ଗଉରବ ମାନ
ପାଦ ପଦ୍ମ ସେବା କରିଛି ସମ୍ବଳ
ଲୋଡ଼ା ନାହିଁ ଆଉ କିଛି । ୧ ।

ଦେଖାଇଲେ ଯେତେ ମାୟା ପ୍ରଲୋଭନ
ରସିବି ନାହିଁ ମୁଁ ଗଲେ ଯାଉ ପ୍ରାଣ
ଠକି ଦେଇ ମୋତେ ଛାଡ଼ି ଚାଲିଯିବ
ଭଲ ଭାବେ ମୁଁ ଜାଣିଛି । ୨ ।

କର୍ମ କରୁଥିବି ଫଳ ତୋତେ ଦେବି
ନିରାହାରେ ରହି ଆନନ୍ଦ ହୋଇବି
କରୁଣା ସାଗର ନ କରିବ ପର
ନ ପାରିବି ମୁଁ ମୁରୁଛି । ୩ ।



# କିଛି ମୋର ନାହିଁ

କିଛି ମୋର ନାହିଁ କି ଦେଇ
ପୂଜିବି ତୋ ପୟର
ମନ୍ତ୍ରହୀନ କ୍ରିୟାହୀନ ମୁଁ
ଭକ୍ତି ହୀନ ପାମର । ୦ ।

ପାଉନାହିଁ ରାହା, ସାହା ତୋ
ବିନା ହେ ମହାବାହୁ
ଠିଆ ହେବ ବୋଲି ପାଖରେ
ଜଣେ ନ ଦିଶେ ଆଉ । ୧ ।

ନେତ୍ର ପଥେ ଯାହା ଆସଇ
ସବୁ ଖେଳ ମାୟାର
ଦୂରେଇ ନେବାକୁ ତୋ' ଠାରୁ
ସଭିଏଁ ତତପର । ୨ ।

ଯେତେ ପରିଶ୍ରମ ମୋହର
ସବୁ ହେଲାଣି ପଣ୍ଡ,
ହେଲେ ନିସ୍ତାର ନାହିଁ ଏଥୁଁ
ଏବେ ଦଣ୍ଡିଲେ ଦଣ୍ଡ । ୩ ।



କୃପା କରି ଯେ ପଦ୍ମପାଦେ
ଦେଇଅଛ ଶରଣ ।
ସେହି ପାଦେ ଦୃଢ଼ ବିଶ୍ୱାସ
ଦିଅ ହେ ନାରାୟଣ । ୪ ।

ଚେତା ଥିବ ତୁମ୍ଭ କଥାରେ
ପାଦଧୂଳି ମଥାରେ
ନିଶି ଦିବସ ଯିବ ବିତି
ମୋର ତୁମ୍ଭ ଚିନ୍ତାରେ । ୫ ।

ଶ୍ରୀଗୁରୁ ଗୋବିନ୍ଦ ସୁମରି
ଲେଖଇ ଅରକ୍ଷିତ
ଅନ୍ତରେ ବସି କହି ଦେଉଥାନ୍ତି
ଦୁଃଖି ସଙ୍ଗାତ । ୬ ।



ସନ୍ଧ୍ୟା କର୍ମ କର ସକାଳେ
ଦୁର୍ଲ୍ଲଭ ଜନ୍ମ ଏହି,
କରିବା ନାହିଁକି' ବୋଇଲେ,
ଆଉ ମିଳିବ ନାହିଁ ।।

# ଯୋଗ୍ୟ କରି ଗଢ଼ ମୋତେ

ଯୋଗ୍ୟ କରି ଗଢ଼ ମୋତେ ତବ ସେବା ପାଇଁ
ଶ୍ରୀରଙ୍ଗା ଚରଣ ତଳେ ରଖ ମୋତେ ନେଇ । ୧ ।

ଜ୍ଞାନହୀନ ଶିଶୁପରି କର ହେ ସରଳ
ମାତା ହୋଇ ନିଅ ପ୍ରଭୁ ଟାଣି ତୁମ୍ଭ କୋଳ । ୨ ।

ଗଙ୍ଗାଜଳ ପରି ମନ ହେଉ ଶୁଦ୍ଧପୂତ
କାମନା କଳ୍ପନା ସବୁ ହେଉ ଭସ୍ମସାତ । ୩ ।

ହିମାଚଳ ପରି କର ଅଟଳ ଅଚଳ
ଦୁଃଖ ସୁଖରେ ଯେପରି ନ ହୁଏ ଆକୁଳ । ୪ ।

ପ୍ରଶାନ୍ତ ଆକାଶ ପରି ପ୍ରଶସ୍ତ ହୃଦୟ
କରି ତହିଁ ବିଜେ କର ଆହେ ଦୟାମୟ । ୫ ।



ମହୋଦଧି ପରି ସୁଗଭୀର କର ମୋତେ
ବାରମ୍ବାର ବୁଡ଼ି ଖୋଜୁଥିବି ମୁହିଁ ତୋତେ । ୬ ।

ଫୁଲରୁ କୋମଳ କରି ଗଢ଼ ଏ ପରାଣ
ବନ୍ଧା ରଖ ଛନ୍ଦା ପଦେ ଏତିକି ଜଣାଣ । ୭ ।



# ଆରେ ମନ ଚାଲଯିବା

ଆରେ ମନ ଚାଲଯିବା
ଚାଲ ଯିବା ସେହି ଶାନ୍ତିଧାମ
ଥରେ ଯେଉଁଠାକୁ ଗଲେ ଫେରିବାକୁ
ହେବ ନାହିଁ ଆଉ ମନ୍ଦ ଭିଡ଼ା

ଯାହାର ଧୂଳିରେ ସେହି ପ୍ରଭୁଙ୍କର
ପାଦର ପରଶ ପାଇବୁ ସତ୍ୱରି
ଆନନ୍ଦରେ ଧୂଳି ସର୍ବାଙ୍ଗରେ ବୋଳି
ସଫଳ କର ଜୀବନ । ୧ ।

ତରୁଲତା ଦେହେ ଶ୍ରୀକର ପରଶ
ପାଇ ମେଣ୍ଟିଯିବ ହୃଦର ପରାଶ
କାଉଁରୀ କାଠିରେ ଛୁଇଁ ଦେଲାପରି
ଖେଳିଯିବ ଶିହରଣ । ୨ ।

ବହେ ତହିଁ ଯେଉଁ ଶୀତଳ ସମୀର
ଶ୍ରୀଅଙ୍ଗ ସୁବାସେ ଅତି ମନୋହର
ତା ପରଶେ ପ୍ରଭୁ ପାଶେ ଥିବା ସୁଖେ
ହୋଇ ଯିବୁରେ ମଗନ । ୩ ।

ସେ ଧାମର ଜଳ ଅମୃତ ସମାନ
କଲେ ତୁହି ସ୍ନାନ ହେବୁରେ ପାବନ
ଗର୍ବ ଅଭିମାନ ସବୁ ହେ ଚୂର୍ଣ୍ଣ
ଶ୍ରୀପଦେ ପାଇବୁ ସ୍ଥାନ । ୪ ।



# ପ୍ରଭୁ ଦୀନବନ୍ଧୁ

ପ୍ରଭୁ ଦୀନବନ୍ଧୁ ହେ କରୁଣାସିନ୍ଧୁ
କାହିଁକି କରୁଣା ଊଣା
ଏ ମାୟା ସଂସାରେ ଅଜ୍ଞାନ ଅନ୍ଧାରେ
ହେଉଛି ମୁଁ ବାଟବଣା । ୦ ।

ସ୍ୱଜନ ବାନ୍ଧବ ସ୍ତ୍ରୀ ପୁତ୍ର କୁଟୁମ୍ବ
ସମ୍ପତ୍ତିର ସାଥୀ ଅଟନ୍ତି ଏ ସର୍ବ
ସରିଲେ ସମ୍ପତ୍ତି ସର୍ବେ ଛାଡ଼ିଯାନ୍ତି
ଜାଣି ମୁଁ ହୁଏ ଅଜଣା । ୧ ।
କ୍ରୋଧ ଲୋଭ ମିଥ୍ୟା କରନ୍ତି ବନ୍ଧୁତା
ସତ୍ୟ ଶାନ୍ତିକୁ ସେ ମାରନ୍ତି ଗଳଥା
ବାଟ ଛାଡ଼ି ଅବାଟରେ ନ୍ୟନ୍ତି ଚାଳି
ଜାଣି କି ହୁଅ ଅଜଣା । ୨ ।

ଦମ୍ଭ ଦର୍ପ ଅଭିମାନ ଆଦି ଯେତେ
କରନ୍ତି କବଳ କେ ରଖିବ ମୋତେ
ପ୍ରଭୁ ପରା ମୋର କରୁଣା ସାଗର
ଶୁଣି ହୁଅନ୍ତି ଅଶୁଣା । ୩ ।

ନାହିଁ ମୋ ସାଧନା        ପୂଜା ଅରଚନା
ନଶ୍ୱର ଜଗତେ        ନିତି ବିକାକିଣା
ଭବ ରୋଗ ବ୍ୟାଧି        ଗ୍ରସ୍ତ ମୁହିଁ ପରା
ବୈଦ୍ୟ ତୁମ୍ଭେ ମୋ ମାଗଣା । ୪ ।

ଜାଣେନା ମୁଁ ସାଧୁ        ସେବା କି ପଦାର୍ଥ
ଗୀତା ଭାଗବତ        ଅବା ନାମାମୃତ
ପଶୁଛି ଶରଣ        ଅରକ୍ଷ ରକ୍ଷଣ
କୃପାନେତ୍ରେ ବାରେ ଅନା । ୫ ।



ସାଧୁ ସଙ୍ଗ ଯେହୁ କରନ୍ତି
ପ୍ରାପ୍ତ ହୋନ୍ତି ଶ୍ରୀହରି,
ସାଧୁ ସଙ୍ଗକୁ ଇଛା କର
ଆଉ ନ କର ଡେରି ।

# ଭକତ ଅଧୀନ ଭଗବାନ

ଭକତ ଅଧୀନ ଭଗବାନ ସିନା ତୁହିରେ
ଭକତ ଭାବରେ ବାଇ ନାମ ଭାବଗ୍ରାହୀରେ । ୦ ।

ଭକତ ତୋର ଜୀବନ ତୁ ତା'ର ଜୀବନରେ
ଭକତ ନିମନ୍ତେ ତେଜୁ ରତ୍ନ ସିଂହାସନରେ । ୧ ।

ଅରୂପାନନ୍ଦ ତୁ ରୂପ ହେଉ ଭକ୍ତ ଭାବରେ
ଭକ୍ତ ଭାବେ ଅସମ୍ଭବ କରୁ ତୁ ସମ୍ଭବରେ । ୨ ।

ଭକତ ଅଇଁଠା ଖାଉ ତୁ ଅତି ଆନନ୍ଦରେ
ଭକତ ମାଇଲେ ମାଡ଼ ଆଉଁସୁ ତା ପାଦରେ । ୩ ।

ଭକ୍ତ ରଥେ ତୁ ସାରଥୀ ଭକ୍ତ ଯୁଦ୍ଧେ ସେନାରେ
ଭକ୍ତ ପାଇଁ ଭାର ବହୁ ତୁହି ଏକା ସିନାରେ । ୪ ।

ଭକତ ବୋଲରେ ଦୂତ ପଣେ ତୁହି ଉଭାରେ
ଭକତ ମହତ ରଖୁ ସିନା ରାଜସଭାରେ । ୫ ।

ଏତେ ଗୁଣେ ଯେ ଭକତ ଧନ୍ୟ ତା ଜୀବନରେ
ଅରକ୍ଷିତ ଦାସ ମାଗେ ତା' ଚରଣେ ସ୍ଥାନରେ । ୬ ।



# କେଉଁ ମୁହଁ ନେଇ

କେଉଁ ମୁହଁ ନେଇ
ଯିବି କହ ସହି
ସେ ଶ୍ୟାମ ନାଗର ପାଶେ ମୁହିଁ
ଯମୁନା ଘାଟରେ ସେ ଯେବେ ଧରିଲା
ପଣତ କାନି ମୁଁ ନେଲି ଛଡ଼ାଇ । ୦ ।

ଲୁଚି ଛପି ଦଧି ଭାଣ୍ଡ ମୋ ଭାଙ୍ଗିଲା
ବାଟରେ ଘାଟରେ ହଟହଟା କଲା
ଗାଳି ଭରଛନା ଯେତେ ମୁଁ କରିଲି
ଭୁଲି ପାରିବକି କେବେ କହ୍ନାଇଁ । ୧ ।

ଚୋରି କଲା ଯେବେ ସେ ସରଳବଣୀ
ଗୁହାରୀ କଲି ମୁଁ ହୋଇ ଅସହଣି
ଗାଈ ଛନ୍ଦେ ଛନ୍ଦି ପିଟିଲେ ଯଶୋଦା
ସେ ଦାଗ କି ଅଙ୍ଗୁ ଯିବ ମିଳାଇ । ୨ ।

ସାରିଛି ତ ସବୁ ମୁଁ ଅପରାଧିନୀ
ଢାଳିଲେ କି ହେବ ଏବେ ଆଖିପାଣି
କହିବାକୁ ମୋର ଆଉ କିଛି ନାହିଁ
କହିବୁ ବସିଛି ତା ବାଟ ଚାହିଁ । ୩ ।



# ଦୋଷ ଦେଲେ ତୋତେ

ଦୋଷ ଦେଲେ ତୋତେ କିସ ହେବ ପ୍ରଭୁ
ମୁହିଁ ନିଜେ ଅପରାଧୀ
ନାହିଁ ମୋର ଜ୍ଞାନ ନାହିଁ ମୋର ଧ୍ୟାନ
ନାହିଁ ତିଳେ ହେଲେ ବୁଦ୍ଧି । ୦ ।

ଯାହା ନୁହେଁ ମୋର ସେ ସବୁ ନିଜର
ମଣି ଲଭେ ଦୁଃଖ ଶୋକ
ଅନୁତାପାନଳେ ଦଗ୍ଧ ହୁଏ ପ୍ରାଣ
ଝୁରଇ ଜୀବନ ଯାକ । ୧ ।

ମନ ଇନ୍ଦ୍ରିୟଙ୍କୁ ନ କରି ମୁଁ ବଶ
ଚାଲଇ ତାଙ୍କ କଥାରେ
ବିବେକର ବେକ ମୋଡ଼ି ବସିଲେଣି
ଏମାନେ ଏବେ ମଥାରେ । ୨ ।

କେବେ କୃପା ହେବ ଆହେ ଲକ୍ଷ୍ମୀଧବ
କୃପା ବିନା ଗଲି ସରି
ବିଷଦାନ୍ତ ଝଡ଼ିଯିବ, ଏ ଭଗାରୀ
ହେବେଟି ବନ୍ଧୁ ମୋହରି । ୩ ।



# ତୁମେ କୃଷ୍ଣ ତୁମେ ରାମ

ତୁମେ କୃଷ୍ଣ ତୁମେ ରାମ
ତୁମେ ମୋର ଅଭିରାମ । ୦ ।

ତୁମେଇ ଯୀଶୁ ତୁମେଇ ଆଲ୍ଲା
ବୁଦ୍ଧ ରୂପେ ତୁମରି ଲୀଳା
ଏ ଧରାଧାମେ ଆସିଲ ତୁମେ
ପାପ ନାଶି ଥାପିଲ ଧରମ । ୧ ।

ଭକତ ସଙ୍ଗେ ଖେଳିଲ ଖେଳ
ବଢ଼ାଇ ରଙ୍ଗେ ପଦ କମଳ
ଭବ ସାଗରୁ କରିଲ ପାରି
ଅଭକତ କି ଜାଣିବ ମରମ । ୨ ।

ସରିବ ନାହିଁ ଗାଇଲେ ଗୁଣ
କିଏ ବାଛିବ ସାଗରୁ ଲୁଣ
ଗୁହାରୀ ମୋର କର ଚାକର
କରିବି ତୁମ ପ୍ରୀତିକର୍ମ । ୩ ।

ଆହୁରି ପଦେ ପଡୁଛି ମନେ
ପ୍ରିୟତମ ମୋର ରଖିବ ମନେ
ବୁଜିବି ଆଖି ତୋ ରୂପ ଦେଖି
ଗାଇ ଗାଇ ତୋ ପାବନ ନାମ । ୪ ।

# କର ଏହି ଆଶିଷ

କର ଏହି ଆଶିଷ ହୃଦୟେଶ ହେ
        ନାମ ରସ ପାନେ ହେବି ତୋଷ । ୦ ।

ଅସାର ସଂସାର ରସରେ ନ ରସି
ରସରାଜ ମୂର୍ତ୍ତୀ ଧ୍ୟାନେ ଥିବି ବସି
ଚେତା ରହିଥିବ ଶ୍ରୀ ଚରଣେ ତବ
        କିବା ରଜନୀ ଦିବସ । ୧ ।

ହେଉଥିବ ଯହିଁ ତବ ଗୁଣଗାନ
ଧାଉଁଥିବ ତହିଁ ମୋ ବେନି ଚରଣ
ହେବି ମୁଁ ଅଚେତା କରି ତୁମ୍ଭ ଚିନ୍ତା
        (କର) ପ୍ରଭୁ ମୋର ସର୍ବନାଶ । ୨ ।

ଯେ ସ୍ଥାନରେ ନାହିଁ ବିଶ୍ୱାସ ଭକତି
ନିଅ ନାହିଁ ପ୍ରଭୁ ମୋତେ ତାର କତି
ନାଶ ମୋ କଳୁଷ ଦିଅ ପ୍ରେମରସ
        କହେ ଅରକ୍ଷିତ ଦାସ । ୩ ।



# ଅଭୟ ପଦ ପଙ୍କଜ

ଅଭୟ ପଦ ପଙ୍କଜ ଅଭିରାମର
ଦୃଢ଼ରେ ଧରିଲେ ଭୟ ହୋଇବ ଦୂର । ୦ ।

ଅଭିମାନ ଶୂନ୍ୟ ହୋଇ ଶରଣ ପଶରେ ଯାଇ
ପ୍ରସାରି ଦେବ ସେ ପରା ଅଭୟ କର । ୧ ।

ଦୁସ୍ତର ଭବ ସାଗର ଅଳ କୂଳ ନାହିଁ ତାର
ଡାକ ଦେଲେ ଆସି କରିବ ସେ ଉଦ୍ଧାର । ୨ ।

ଦୁଃଖ ସୁଖ ଆଦି ଯେତେ ତା କୃପା ବିନା ଜଗତେ
ନାହିଁ କିଛି ନାହିଁ କିଛି ଏ ସତ୍ୟ ଗୀର । ୩ ।

ଯେ ଦିନୁଁ ତାର ଆଶ୍ରୟ ନେଇଛି ଯାଇଛି ଭୟ
କହେ ଦାସ ଅରକ୍ଷିତ ହୀନ ପାମର । ୪ ।



ଶ୍ରଦ୍ଧାଭାବ ଶ୍ରଦ୍ଧାଭାବ
ଶ୍ରଦ୍ଧାଭାବ ସାର,
ଶ୍ରଦ୍ଧାଭାବ ବିନା ଯେତେ
ସବୁ ନାରଖାର ।।

# ଡାକିଲେ ଡାକିଲା ପରି

ଡାକିଲେ ଡାକିଲା ପରି ଆସିବେ ନିଶ୍ଚେ ଶ୍ରୀହରି
କରୁଣା କର ପ୍ରସାରି କରିବେ ସଂସାରୁ ପାରି । ୦ ।

ଡାକିଥିଲା ଶିଶୁ ଧ୍ରୁବ ଆସିଥିଲେ ରମାଧବ
ଶଙ୍ଖ ଚକ୍ର ଗଦା ପଦ୍ମ ଚତୁର୍ଭୁଜ ରୂପ ଧରି । ୧ ।

ପିତାଙ୍କ ପ୍ରଚଣ୍ଡ କୋପ ନ କରି ତିଳେ ଭ୍ରୂକ୍ଷେପ
ଡାକିଥିଲା ପ୍ରହଲ୍ଲାଦ ସ୍ତମ୍ଭରୁ ଥିଲେ ବାହାରି । ୨ ।

ଅକପଟ ଶ୍ରଦ୍ଧାଭାବେ ଡାକି ତୁ ପାରିବୁ ଯେବେ
ରହିକି ପାରିବେ କେବେ ଭକ୍ତ ଜନ ହିତକାରୀ । ୩ ।

କୁରୁପତି ସଭାତଳେ କୃଷ୍ଣା ଡାକିଲା ବିକଳେ
ଶୁଣିଲେ ସେ ପଶାଖେଳେ କୋଟି ବସ୍ତ୍ର ଦାନ କରି । ୪ ।

ଅରକ୍ଷିତ ଦାସ କହେ ଶ୍ରଦ୍ଧାଭାବେ ବନ୍ଧା ସିଏ
ଅରୂପରୁ ରୂପ ହୁଅନ୍ତି ଧରାଧାମେ ଅବତରି । ୫ ।



# ଅଭିରାମ ଅଭିରାମ

ଅଭିରାମ ଅଭିରାମ ଅବିରାମ ଗତିରେ
ଅଚିନ୍ତା ହୋଇତୁ ଭଜ
ଭଜ ମୂଢ଼ ମତିରେ । ୦ ।

ତା ମୂରତି କର ଧ୍ୟାନ
ତା ଚରଣେ ରଖ ମନ
ତା ବିନୁ ମାୟା ସଂସାରେ
ନାହିଁ ଆନ ଗତିରେ । ୧ ।

ପୁରୁଷାଭିମାନ ଛାଡ଼ି
ବେଗେ ପିନ୍ଧରେ ତୁ ଶାଢ଼ୀ
ତା ପ୍ରେମ ଭିକାରୀ ସାଜ
ସେହି ତୋର ପତିରେ । ୨ ।

ତୁ ଚାତକ ସେ ଯେ ଘନ
ସେ ସଲୀଳ ତୁହି ମୀନ
ସେ ତୋର ପୂର୍ଣ୍ଣିମା ଚାନ୍ଦ
ତୁ' ତା' ଅମା ରାତିରେ । ୩ ।

ସବୁ ଦିଅ ତାକୁ ଟେକି
ନ ରଖରେ ଆଉ ବାକି
ମୋ କଥାକୁ ରଖ ଲେଖି
ଲଭିବୁ ତୁ ଶାନ୍ତିରେ । ୪ ।



# ପର କରି ଦିଅନା ମୋ

ପର କରି ଦିଅନା ମୋ ପରାଣ ମିତ

ପରାଣ ଯିବ ମୋ ଛାଡ଼ି ଦୁଃଖୀ ସଙ୍ଗାତ । ୦ ।

ପରଖୁଛ କେତେ ଅବା ପାରିଲା ପଣ

ପାରିବି କି ହୋଇ ପରୀକ୍ଷାରେ ଉତ୍ତୀର୍ଣ୍ଣ

ପାଉ ନାହିଁ ଭରସା ପଦ ପଙ୍କଜେ ଆଶା

ପଦ୍ମ ପଲାଶ ନେତ୍ର କର କୃପା ବରଷା

ଭୟ ଆଉ ରହିବ କି ତୁମେ କୁହ ତ

ମୋର ଅଭୁଲା ମିତ । ୧ ।

ମୁଁ ସିନା ପରା, ଅପରା ଆଉ ଯେତେକ

ପରକୁ ଆପଣା କରି ଲଭନ୍ତି ସୁଖ

"ମୁଁ - ମୋର" ପାଚେରୀ କରି ଅଛନ୍ତି ମୋତେ ଘେରି

ପାପ ପଙ୍କେ ପକାଇ ସର୍ବସ୍ୱ କଲେ ଚୋରି

ଆଉ କେଉଁ ଧନ ତୋତେ ଦେବି କହତ

ଆଉ ନାହିଁ ମହତ । ୨ ।



# ଭାବ ଲଗାଇଲେ ଦୂରେ

ଭାବ ଲଗାଇଲେ ଦୂରେ ନାହିଁ ଭାବଗ୍ରାହୀରେ
ଭାବ ଭୁଞ୍ଜିବାକୁ ଭକ୍ତ ପଛେ ଥାନ୍ତି ଧାଇଁରେ। ୦ ।

ଭାବରେ ଦେଲା ଶବରୀ ଚାଖି ଚାଖି ଫଳରେ
ଆନନ୍ଦରେ ଦାଶରଥି କରିଲେ କବଳରେ । ୧ ।

ବିଦୁର ଘରେ କଦଳୀ ଚୋପା ଶାଗ ଭଜାରେ
ଭୋଜନ କରିଲେ ସିନା କଂସର ଭଣଜାରେ । ୨ ।

ସୁମତିର ଖୁଦଭଜା ସୁଦାମା ହାତରୁ ରେ
ଖାଇ ହାକୁଟି ମାରିଲେ ସିନା କଳ୍ପତରୁରେ । ୩ ।

ହସ୍ତ ବଢ଼ାଇଣ ନେଲେ ଦାସିଆ ନଡ଼ିଆରେ,
ଜଗତର ନାଥ ଜଗନ୍ନାଥ ଚଉବାହାରେ । ୪ ।

ମୁଦି ବନ୍ଧା ଦେଲେ ମାଣିକର ଦହି ଖାଇରେ,
ଯୁଦ୍ଧକୁ ଯିବା ବାଟରେ ସିନା ଦୁଇଭାଇରେ । ୫ ।

ଦିଅ ତୁ ଭକତି ଭାବେ ଯାହା ଅଛି ତୋରରେ,
ଠେଲି ଦେବେ ନାହିଁ କେବେ ଭକ୍ତ ହୃଦ ହାରରେ । ୬ ।



# କେଡ଼େ ସୁନ୍ଦର, ଦିଶୁଛିରେ

କେଡ଼େ ସୁନ୍ଦର
ଦିଶୁଛିରେ ନନ୍ଦ କୁମର
ଶିଖଣ୍ଡ ଚୂଳିଆ ପୀତ ଦୁକୂଳିଆ
ରୁଣୁଝୁଣୁ ବାଜେ ପାଦେ ନୁପୂର । ୦ ।

ନବଘନ କାନ୍ତି ଉଠଇ ଝଳି
ଢଳି ଢଳି ନାଚୁଛି ବନମାଳୀ
ବରଜ ଧୂଳିଆ କାଇଁଚ ମାଳିଆ
ଗୋପ ଗୋଇ ଚିତ୍ତ ଲବଣୀ ଚୋର । ୧ ।

ମନ ଭୁଲାଣିଆ ନୟନ ଠାଣି
ବକ୍ଷେ ବିରାଜିତ କୌସ୍ତୁଭ ମଣି
ଅଧରେ ମୁରଲୀ ଡାକେ ରାଧା ବୋଲି
ରାଧା ବିନା କାହ୍ନା ହୁଏ ଅଧୀର । ୨ ।

ବଡ଼ ଅଝଟିଆ ନନ୍ଦ ଦୁଲାଳ
ତାର ଖେଳ ଯାହା ଅନ୍ୟର କାଳ
କିଏ ସେ ଜାଣିବ ତା ଖେଳର କଥା
ସିଏ ଜାଣେ ସିନା ତାର ହୁନ୍ଦର । ୩ ।

# କାହିଁ ଗଲ ଶ୍ୟାମସୁନ୍ଦର

କାହିଁ ଗଲ ଶ୍ୟାମସୁନ୍ଦର ?
ଶୁଭୁନାହିଁ ମୁରଲୀ ସ୍ୱର
ଛନ୍ଦା ଚରଣେ ରୁଣୁଝୁଣୁ ତାନେ
ବାଜୁନାହିଁ ଆଉ ନୂପୁର । ୦ ।
ବୃନ୍ଦାବନେ ଗୋପ ଗୋକୁଳ
କରୁନାହିଁ ତୃଣ କବଳ
ନୀରବେ ନୟନୁ ଗଡ଼ାଉଛି ନୀର
ନ ପଡ଼େ କି ମନେ ତୁମର ? । ୧ ।
ବ୍ରଜ ଦାଣ୍ଡ ଆଜି ନିଶ୍ଚଳ
ଶୁଭୁନାହିଁ ଗୋଳ ଚହଳ
ସୁଦାମ ସୁବଳ ଶ୍ରୀମୁଖ ମଣ୍ଡଳ
ଘୋଟିଅଛି ଅବା ଅନ୍ଧାର । ୨ ।
ନାହାନ୍ତି ଯେଣୁ ବେଣୁ ପାଣି
ନୀର ଆଣି ଗୋପ ରମଣୀ
ନ ଯାଏ ଯମୁନା ନ ଜାଣକି କାହ୍ନା
ସେ ଯେ ଜାଣେ ପ୍ରୀତି ମଧୁର । ୩ ।
ରାଧାରାଣୀ ଆଜି ପାଗଳୀ
ତୁମ୍ଭ ବିନା ହେ ବନମାଳୀ
ତେଜିବ ଜୀବନ ନିଶ୍ଚେ ପ୍ରାଣଧନ
କର ନାହିଁ ଆଉ ଉଛୁର । ୪ ।
ରାଇ ଦୁଃଖେ ହୋଇ ଦୁଃଖିତ
ଲେଖଇ ଦୁଃଖୀ ଅରକ୍ଷିତ
ଶ୍ରୀଗୁରୁ ଚରଣ କରଇ ବନ୍ଦନ
ତରିବାକୁ ଭବ ସାଗର । ୫ ।



# ଆହେ ଦୀନବନ୍ଧୁ !

ଆହେ ଦୀନବନ୍ଧୁ !
ତୁମ୍ଭ ବିନେ ନାହିଁ ମୋର ଆନ ବନ୍ଧୁ । ୦ ।

ଦୀନ ମୁଁ ଅଟଇ ସବୁଦିନେ
ବିଦ୍ୟା, ବୁଦ୍ଧି, ଧନ ସବୁଗୁଣେ
ତଥାପି ସେଥିକି ଶୋଚନା ନାହିଁ ମୋ
ଝରେ ପରା ତବ କୃପାବିନ୍ଦୁ । ୧ ।

ଆଶ୍ରା କରି ତୁମ୍ଭ ପଦବେନି
ଭାସିଛି କି କେବେ କେଉଁ ପ୍ରାଣୀ
ଭବ ନଦୀ ପାଣି ବହିବ ଉଜାଣି
ନାଉରୀ ନିଜେ ମୋ ଜଗବନ୍ଧୁ । ୨ ।

ନିକଟରେ ଥାଅ ପୁଣି ଦୂରେ
ଭାବନାରେ ମନ ସବୁ କରେ
ଭାବ ବିନୋଦିଆ ଭାବି ନିଅ ଏହା
ଜୀବନ ହାରିବି କାନ୍ଦୁ କାନ୍ଦୁ । ୩ ।

ବିଷୟାରେ ମୁହିଁ ହୋଇ ଭୋଳ
ପାଏ ନାହିଁ ତୁମ୍ଭ ଥଳକୂଳ
ଚରଣ ସେବକେ ମଣାଅ ହେ ପ୍ରଭୁ
ପାଦୁକା ଦେଇ ପଦାରବିନ୍ଦୁ । ୪ ।

ଏତିକି ମିନତି ତୁମ୍ଭ କତି
ତୁମ୍ଭ ଦରଶନେ ରହୁ ମତି
ସେବିବାକୁ ପଦ ମୁଁ ହୁଏ କୁମୁଦ
ତୁମ୍ଭେ ହୁଅ ମୋର ଶରଦିନ୍ଦୁ । ୫ ।

ସାନ ପ୍ରତି ଶ୍ରଦ୍ଧା ଥାଉ ମନେ
ଜୀବେ ଦୟା ଭକ୍ତି ଗୁରୁଜନେ
ଗାଇ ତୁମ୍ଭ ଗୀତ ଶୁଣି ନାମାମୃତ
ନାଚୁ ହର୍ଷେ ମୋ ହୃଦୟ ସିନ୍ଧୁ । ୬ ।

ଲାଞ୍ଚ ମିଛ ମୋତେ ଲାଗୁ ତୁଚ୍ଛ
ନ ହେଉ କା ସଙ୍ଗେ ଉଚ୍ଚବାଚ
ସର୍ବଶାନ୍ତି ପୂର୍ଣ୍ଣ କରହେ ଭୁବନ
ଶାନ୍ତି ଦେବୀ ନ ଛାଡ଼ିବି ସ୍କନ୍ଧୁ । ୭ ।

ଅଛି ପ୍ରତାପର ଏ ବିଶ୍ୱାସ
ପାପ ତାପ ସବୁ ହେବ ନାଶ
ଶେଷ ଜୀବନରେ ବିକଶିବ ଘୋଷି
ଚାଖି ତୁମ୍ଭ ନାମ ରସ ମଧୁ । ୮ ।



# ତୁମ ଅଗଣାରେ

ତୁମ ଅଗଣାରେ ଫୁଲଟିଏ ହୋଇ
ବାସୁଥିବି ମହମହ
ଏତିକି କରୁଣା ହେବ କେଉଁଦିନ
କୁହ ପ୍ରଭୁ ତୁମେ କୁହ । ୦ ।

ତୁମରି ରଙ୍ଗରେ ରଞ୍ଜିତ ହୋଇ
ସବୁରି ମନ ମୁଁ ନେଉଥିବି ମୋହି
ତୋଳିବାକୁ କେହି ବଢ଼ାଇଲେ ହାତ
କହୁଥିବି ରହ ରହ । ୧ ।

ମନ୍ଦ ମଳୟର ତାଳେ ତାଳେ ମୁହିଁ
ନାଚୁଥିବି ଅଙ୍ଗଭଙ୍ଗୀ ମୁଁ ଦେଖାଇ
ସଙ୍ଗେ ଥିବ ତୁମେ ମଦନ ମୋହନ
ହସୁଥିବ ଅହରହ । ୨ ।

ତୁମେ ସିନା ମୋର ମୁଁ ଅଟେ ତୁମରି
ତୁମ ପାଦ ତଳେ ପଡ଼ିବି ମୁଁ ଝରି
ତୁମ କରୁଣାରେ ସବୁ ହେବ ପ୍ରଭୁ
ଶୁଭୁଥିବ ଜୟ ଜୟ । ୩ ।



# ମାୟାଧର ମାୟା ନୁହେଁ ସହଜ

ମାୟାଧର ମାୟା ନୁହେଁ ସହଜ
ମାୟାବଶେ ମନ ସ୍ଥିର କରି ତୁ ହେଜ । ୦ ।

ମାୟା ରୂପ ବଦଳାଇ ଖେଳଇ ଖେଳ
ମାୟା ଲୁଚି ଛପି ପାଦେ ଦିଏ ଶୃଙ୍ଖଳ
ସଦା ହେତୁ କରି ବୁଝ ମାୟାର ଖଞ୍ଜ । ୧ ।

ରାଜା ଘରେ ରାଣୀ ଯୋଗୀର ଯୋଗିନୀ
ନୁହେଁ ସାମାନ୍ୟ ଟିକିଏ ମାୟା କରଣୀ
ମାୟା ଧରିବାକୁ ଥିଲେ ଗୁଇନ୍ଦା ସାଜ । ୨ ।

ମାୟା ତରିଲେ ତରିବୁ ଭବ ସାଗର
ପଶ ଶରଣ ପ୍ରଭୁଙ୍କ ପଦ୍ମ ପୟର
ମାୟା ନ ତୁଟିଲେ ନାହିଁ କାହିଁରେ କାର୍ଯ୍ୟ । ୩ ।



# ହରି ଗୁଣ ଗାନ ତୁ କର ମନ

ହରି ଗୁଣ ଗାନ ତୁ କର ମନ
ହରି ଛଡ଼ା ନାହିଁ ଆଉ ସଂକୀର୍ତ୍ତନ । ୦ ।

କର ମନ ସାଧୁସଙ୍ଗ ତୁ ପ୍ରତିଦିନ
ଇନ୍ଦ୍ରିୟ ମାନଙ୍କୁ ତୁହି କର ଦମନ
ଷଡ଼ ଅଇରିଙ୍କୁ ନାଶ ପାନ କର ସୁଧାରସ
ହରିଙ୍କି ଦିଅରେ ତୋର ତନୁ ମନ । ୧ ।

ମୁଖେ ହରିନାମ ତୁହି କର ଭଜନ
ଶ୍ରବଣେ ହରିଙ୍କ କଥା କର ଶ୍ରବଣ
କରେ ହରି କର୍ମ କର ହୃଦରେ ହରି ସୁମର
ହରି ମନୋହର ରୂପ କର ଦର୍ଶନ । ୨ ।

ବୃଥାରେ ଯାଉଛି କାଳ ମନେ ତୁ ଘେନ
କାଲିକୁ କରିବା ଆଶା କର ବର୍ଜନ
ନୁହେଁ ଖାଲି ଆଜିଠାରୁ ଏବେ ଏହି ମୁହୂର୍ତ୍ତରୁ
ଶରଣ ପଶ ତୁ ହରି ଛନ୍ଦା ଚରଣ । ୩ ।



# ଲିଭି ଲିଭି ଯାଏ ଜୀବନ - ଦୀପ ମୋ

ଲିଭି ଲିଭି ଯାଏ ଜୀବନ - ଦୀପ ମୋ
ସରି ସରି ଆସେ କଥା
ଝରି ଝରି ଯାଏ ଆଖି ଲୁହ ଯେତେ
ନଇଁ ନଇଁ ଆସେ ପତା । ୧ ।

ଶୁଖି ଶୁଖି ଯାଏ କଣ୍ଠ ମୋର ପ୍ରଭୁ
ଥରି ଥରି ଆସେ ଅଙ୍ଗ
ବଢ଼ି ବଢ଼ି ଯାଏ ଚିନ୍ତା ମୋର ପ୍ରଭୁ
କଟି କଟି ଆସେ ସଙ୍ଗ । ୨ ।

ମରି ମରି ଯାଏ ମନ କଥା ମନେ
ମାଡ଼ି ମାଡ଼ି ଆସେ କାଳ
ରଖ ରଖ ପ୍ରଭୁ ଦୀନ ହୀନ ଜନେ
ନିଅ ନିଅ ପଦ ତଳ । ୩ ।

ହରି ହରି ବୋଲି ଯାଉ ଜୀବ ଚାଲି
କର କର ହେ କରୁଣା
ଯୁଗ ଯୁଗ ଧରି ତୁମ୍ଭଙ୍କୁ ପାଶୋରି
ହେଲି ଏତେ ସରି ସିନା । ୪ ।



# ପବିତ୍ର କରହେ ମନକୁ ମୋହର

ପବିତ୍ର କରହେ ମନକୁ ମୋହର
ଦୟାମୟ ଭାବଗ୍ରାହୀ
କଳୁଷ ଯେତେ ମୋ ଅନ୍ତରେ ଭରିଛି
ଯାଉ ନେତ୍ର ଜଳେ ଧୋଇ । ୧ ।
ତୁମରି ଆଲୋକେ ଆଲୋକିତ ହେଉ
ହୃଦୟ ମନ୍ଦିର ମୋର
ହୃଦୟ କମଳ ବିକଶିତ ହେଉ
ସେବିବାକୁ ତୋ ପୟର । ୨ ।
ତୁମରି କରୁଣା ପରଶେ ଜୀବନ
ହେଉ ଏକ ଦୀର୍ଘ ପୂଜା
କାମ କ୍ରୋଧ ଲୋଭ ରିପୁଙ୍କୁ ସଂହାରି
ହୁଅ ଏ ରାଜ୍ୟର ରଜା । ୩ ।
ରଖ ଦାସ ପଣେ ସଦା ତବାଧୀନେ
ଅନ୍ୟେ ନ ବଳୁ ମୋ ମତି
ତୋ ପବିତ୍ର ନାମ ଗାଇ ପ୍ରେମୋଲ୍ଲାସେ
ବିତି ଯାଉ ଦିନରାତି । ୪ ।
ଅରକ୍ଷିତ ଦାସ ନୁହଁଇ ଅନ୍ୟର
ନ ହୋଇ ପାରିବ କେବେ
ଆଦ୍ୟରୁ ତୁମରି ଏବେ ବି ତୁମରି
ଅନ୍ୟକେ ନାହିଁ ତା' ଭବେ । ୫ ।



# ମୁଁ ଫୁଟିଛି ତୁମ ପାଇଁ

ମୁଁ ଫୁଟିଛି ତୁମ ପାଇଁ ତୁମେ ମୋର ଗତି
ତୁମେ ମୋର ସାଥୀ ସିନା ମୋ ନେତ୍ର ସମ୍ପତ୍ତି । ୦ ।

କେତେ ଜନମରୁ ଆଶା ବାନ୍ଧିଛି ମୁଁ ମନେ
ଅରପିବି ଆପଣାରେ ତୋ ଛନ୍ଦା ଚରଣେ
ନିରାଶ ନ କର ଏବେ ନିଅ ତୁମ୍ଭ କତି । ୧ ।

ଅଙ୍ଗରେ ଭରିଛି ମୋର ଯେତେକ ସୁବାସ
ଘେନିବ ଶ୍ରଦ୍ଧାରେ ପ୍ରଭୁ ଲଭିବ ସନ୍ତୋଷ
ଅତି ନିରିମାଖି ମୁହିଁ ତୁମ୍ଭେ ମୋର ପତି । ୨ ।

ବିଳମ୍ବ ନ ପାରେ ସହି ନିଅ ବେଗେ ତୋଳି
ଆଉ କାହାରି ନଜର ନ ପଡୁ ଯେଭଳି
ସଞ୍ଜ ନଇଁ ଆସିଲାଣି ଆସିଯିବ ରାତି
ଭେଟ ହେବ କେତେବେଳେ ଶ୍ରୀମତି ଶ୍ରୀପତି । ୩ ।



# ଯୋଗ୍ୟ ନୁହେଁ ମୁହିଁ

ଯୋଗ୍ୟ ନୁହେଁ ମୁହିଁ ତୋ ପାଦପଦ୍ମକୁ
ନ ଜାଣକି ତୁମେ ଅନ୍ତର୍ଯ୍ୟାମୀ,
କିମ୍ପାଇଁ ଶରଣ ଦେଇ ନାରାୟଣ
ଏବେ କରୁଛ ବିପଥଗାମୀ ।

ଜାଣି ତ ନଥିଲି ତୁମେ କିଏ ବୋଲି
କି ଅବା ତୁମରି ନାମ ଗୁଣ,
କାହିଁ କେତେ ଦୂରୁ ଡାକି ନେଲ ପୁଣି
ଦେଖାଇଲ ରୂପ ଅନୁପମ ।

ଭୁବନ ମୋହନ ଠାଣିରେ ମୋହିଲ
ଆଖିରେ ଆଖି ତୋ ଗଲା ମିଶି,
ଶୂନ୍ୟ ଥିଲା ଯେଉଁ ହୃଦୟ ମନ୍ଦିର
ପୂର୍ଣ୍ଣ କରିଦେଲ ନିଜେ ବସି ।



ପୂରିଗଲା ମନ ପୂରିଲା ନୟନ
 ଦେଖି ତୋ ଅଧରେ ମୃଦୁହାସ
ଜୀବନ ବିକିଛି ସେଦିନୁ ତୋ ପାଦେ
 ସାଜିଛି ତୁମରି କିଣାଦାସ ।

ଏବେ କିଆଁ କର ଡହଳ ବିକଳ
 ତହିଁରୁ ପାଉଛ କିବା ସୁଖ,
ଝୁରି ଝୁରି ତୋତେ ସରିଯିବି ମୁହିଁ
 ନ ହୁଅ ବିମୁଖ ପଦ୍ମମୁଖ ।

ତୁମ ଲୁଚକାଳି ଖେଳ ମୋର କାଳ
 ବିରହ ବେଦନା ନିଏ ପ୍ରାଣ,
ଅରକ୍ଷିତ ଡାକେ ଖେଳିବା ଆସହେ
 ଆଉ ଯଦି ଖେଳ କିଛି ଜାଣ ।



ମୁଁ ଯଦି ବିରସ ହୁଅଇ
 ମୋତେ ବିରସ ଦିଅ,
ମୁଁ ଯଦି ହରଷ ହୁଅଇ
 ମୋତେ ହସାଉଥାଅ ।

# ଗଛଲତା ଫାଙ୍କରେ ତୁ

ଗଛଲତା ଫାଙ୍କରେ ତୁ ଦେଉଛୁ ଚାହିଁ
ସୂରୁଜ ରୂପରେ ସିନା କଳା କହ୍ନାଇଁ । ୦ ।

ତୋ କିରଣ - କର ଲମ୍ବି ଆସଇ ସତେ
ତୋ ବିଶାଳ ବାହୁ ନିଏ କୋଳେଇ ମୋତେ
ତୋ ବିରହ ବ୍ୟଥା ଯେତେ ଦିଏ ଭୁଲାଇ
ପୁଲକିତ ହୁଏ ଦେହ, ଝୁରେ ତୋ ପାଇଁ । ୧ ।

ଭସା ବାଦଲ ଭିତରେ ଲୁଚାଇ ମୁଖ
ଚାହିଁ ଦେଉ ଯେତେବେଳେ ହେ ଚନ୍ଦ୍ରମୁଖ
ତୋ ଶୀତଳ କର ଦିଏ ମନ ମଜାଇ
ଲୁଚ କାଳି ଖେଳ ତୋର ବୁଝି ନୁହଁଇ । ୨ ।

ରବି ଶଶୀ ତୋ ନୟନ ଦିବା ନିଶିରେ
ସୃଷ୍ଟି ତୋ ହୁଏ ବିଲୟ ବୁଜିଲେ ଥରେ
ଇଚ୍ଛାମୟ ତୋ ଇଚ୍ଛାରେ ସବୁ ହୁଅଇ
ଅଳି ତୋ କୃପାନୟନ ବୁଜିବୁ ନାହିଁ । ୩ ।



# ମଙ୍ଗଳ ମୟୀ ମା

ମଙ୍ଗଳ ମୟୀ ମା ମଙ୍ଗଳା ତୁ
    ଚଳ ଚଳ ଚଞ୍ଚଳ ଚଞ୍ଚଳା ତୁ । ୦ ।

ବରାଭୟ ଦାୟିନୀ ଭଗବତୀ ତୁ
ବିପଞ୍ଚି ବାଦିନୀ ସରସ୍ୱତୀ ତୁ
    କଣ୍ଠେ ବସି ଗାଉ ଗୀତ ଶାରଳା ତୁ । ୧ ।

ଦୁର୍ଗତି ନାଶିନୀ ମା ଦୁର୍ଗା ତୁ
ଜଗତ ଜନନୀ ଜଗଦମ୍ବା ତୁ
    ଜଗତର ପଡ଼ିଦାତ୍ରୀ କମଳା ତୁ । ୨ ।

କୃଷ୍ଣ ପ୍ରିୟା ଭାବ ରୂପା ରାଧାରାଣୀ ତୁ
ନାରାୟଣ ପ୍ରାଣପ୍ରିୟା ନାରାୟଣୀ ତୁ
    ନିରିମଳ କରୁ ମନ ବିମଳା ତୁ । ୩ ।

ଶକ୍ତିମୟୀ ଭକ୍ତିମୟୀ କୁଣ୍ଡଳିନୀ ତୁ
ଦୟାମୟୀ କୃପାମୟୀ କମଳିନୀ ତୁ
    ମୁଁ ଅବୁଝା ପୁଅ ପୁତ୍ର-ବତ୍ସଳା ତୁ । ୪ ।



# ଆସିବ ସେଦିନ

ଆସିବ ସେଦିନ କୁହ କେବେ ପ୍ରଭୁ
କାନ୍ଦି କାନ୍ଦି ତୁମ ପାଇଁ
ଶୁଖି ଯିବ ଆଖି ବିନ୍ଦୁଏ ଲୋତକ
ତହିଁରେ ରହିବ ନାହିଁ । ୦ ।

ଆପଣାର ବୋଲି ନ ଥିବେ କେ ପାଶେ
ମୋର ବାପ ଭାଇ ବୋଲିବା ସକାଶେ
ଦେଉଥିବି ଡାକ ହେ କଳା ଶ୍ରୀମୁଖ
ଆସ ହେ ଜଗତ ସାଇଁ । ୧ ।

ମନ ମଜ୍ଜିଥିବ ଶ୍ରୀଚରଣେ ତବ
ଗୋବିନ୍ଦ ଗୋପାଳ ତୁଣ୍ଡ ଗାଉଥିବ
ମୁଁ ହେବି ବଣିକ ତୁ କଳା ମାଣିକ
ନାବ ନେବୁ ମୋର ବାହି । ୨ ।

ଶୁଣୁଥିବ କର୍ଣ୍ଣ ତୋର ବଂଶୀସ୍ୱନ
ତୋ ଛନ୍ଦା ଚରଣ ନୂପୁର ନିକ୍ୱଣ
ତୋ ରାସ ଦର୍ଶନେ ନୟନ ସନ୍ତୋଷ
କୃପା ନେତ୍ରେ ଦେବୁ ଚାହିଁ । ୩ ।



# ନେତ୍ର ବୁଜି ଦେଲେ

ନେତ୍ର ବୁଜି ଦେଲେ ହୃଦରେ ପ୍ରକାଶ
ହେବ ଆଉ କେତେବେଳେ ?
ପାଉନାହିଁ ଥଳ ପାଉନାହିଁ କୂଳ
ଭାସୁଛି ମୁଁ ଭବଜଳେ । ୦ ।

ଏ ସ୍ଥୁଳ ନୟନ ହୁଏ ନାହିଁ ବୁଜି
ସଂସାରି ଦୃଶ୍ୟରେ ଥାଏ ସଦା ମଜ୍ଜି
ଏ ଅନ୍ଧପୁଟୁଳି କେବେ ଦେବ ଖୋଲି
ନାଚିବ ତୁମେ ମୋ ଡୋଳେ । ୧ ।

ତୁମେ ହେବ ସେବ୍ୟ ମୁଁ ତୁମ ସେବକ
ଜ୍ଞାନ ନେତ୍ର ଖୋଲି ଉଇଁବ ବିବେକ
କାମନା ବାସନା ଡେଣା ଝଡ଼ିଯିବ
ଡେଇଁ ପଡ଼ିବ ମୋ କୋଳେ । ୨ ।

ନନ୍ଦିଘୋଷ ରଥ ହୋଇଅଛି ଠିଆ
ବିଜେ କର ଆସି ହେ ଚକା ଆଖିଆ
ଆନନ୍ଦେ ଦଉଡ଼ି ଧରି ନେବି ଭିଡ଼ି
ତୋର ଭକତଙ୍କ ମେଳେ । ୩ ।



# ହଜି ଯାଇଛି ତୋ

ହଜି ଯାଇଛି ତୋ ହସଟି କାହିଁକି
ଶୁଖି ଯାଇଛି ତୋ ମୁଖ ?
ମୋ କର୍ମରେ ତୋର ଚନ୍ଦ୍ର ବଦନରେ
ଲାଗିଗଲା କି କଳଙ୍କ ? । ୦ ।

ତୋ ହସରେ ଫୁଟେ ଶତ ଶତଦଳ
ଶ୍ରୀମୁଖ ମଣ୍ଡଳ ଦିଶଇ ଉଜ୍ଜ୍ୱଳ
ଆନନ୍ଦ କଲ୍ଲୋଳ ଧାରା ବହିଯାଏ
ଅନ୍ତରେ ଜାଗେ ପୁଲକ । ୧ ।

ବିରସ ବଦନ ନ ହୁଏ ସହନ
ବିଷ ପରି ପିତା ଲାଗେ ଏ ଜୀବନ
ହସି ଦେ'ରେ ଥରେ ଝରିଯାଉ ପୁଷ୍ପ
ଘୁଞ୍ଚିଯାଉ ମୋର ଦୁଃଖ । ୨ ।

ଅବୋଧ ବାଳକ କରିଥିଲେ ଦୋଷ
କରିଦିଅ କ୍ଷମା ହେ ମୋର ହୃଦେଶ
ଧରି ବସିଥିଲେ ଉଜୁଡ଼ି ଯିବ ତୋ
ହାତଗଢ଼ା କୋଣାରକ । ୩ ।



# ଫେରାଇ ଆଣିବ

ଫେରାଇ ଆଣିବ ନଡ଼ିଆ ମୋ ଯେବେ
ନ ନେବ ସେ ହାତ ବଢ଼ାଇ
କହିଥିଲା ସିନା ଦାସିଆ ବାଉରୀ
ଆଉ କିଏ ଅବା ପାରିବ କହି । ୦ ।

କି ଭାବ ସତରେ ଥିଲା ଦାସିଆର
ଏଡ଼େ ଟାଣ କରି କହିଦେଲା ଗୀର
ବାଉରୀ ବାପୁଡ଼ା କଥା ରହିଗଲା
ଯୁଗ ଯୁଗ ଧରି ଗୋସାଇଁ । ୧ ।

ଜାଉ ଥାଳି ପରେ ଶାଗରୁ ମେଞ୍ଚାଏ
ଦେଖି ଯା' ଆଖିରେ ଚକାଆଖି ଉଏଁ
ଖାଇବା ଥାଳିରୁ ଉଠି ନାଚେ ଗାଏ
ଭୋକ ଯା'ର ଯାଏ ଉଭେଇ । ୨ ।

ବାଳି ଗାଆଁ ଦାସ ଜାତିରେ ଅଛୁଅ
ବୋଝରୁ ଯାହାର ଉଡ଼ିଥିଲା ଆମ୍ବ
ନିର୍ମଳ ଭକତି ଭାବର ଶକତି
କେତେ ଥିଲା ଦେଲ ଦେଖାଇ...
ଆମ୍ବ ଚୋପା ଥିଲ ଲୁଚାଇ .....
ଜଗତେ ଡିଣ୍ଡିମ ବଜାଇ .... । ୩ ।



# ସରଜି ଏ ବିଶ୍ୱ

ସରଜି ଏ ବିଶ୍ୱ ରହିଛ ଗୋପନେ
ସବୁରି ଭିତରେ ତୁମେ
କୀଟ ଠାରୁ ବ୍ରହ୍ମ ଜଡ଼ରୁ ଚେତନ
ତୁମେ ଆଉ ଖାଲି ତୁମେ । ୦ ।

ଜଳରେ ଜୀବନ ପବନରେ ପ୍ରାଣ
ଅନଳରେ ତେଜ ଆକାଶରେ ଶୂନ୍ୟ
ପୃଥ୍ୱୀରେ ଉପଜ ରୂପେ ବିଦ୍ୟମାନ
ରୂପ ଅରୂପରେ ତୁମେ । ୧ ।

ଫଳ ମଧ୍ୟେ ରସ ଫୁଲରେ ସୁବାସ
ଜୀବ ମଧ୍ୟେ ଆତ୍ମା ରୂପେ ପରକାଶ
ଏ ସାରା ସଂସାର ତୁମ ଖେଳ ଘର
କର୍ମ ଅକର୍ମରେ ତୁମେ । ୨ ।

ତୁମ ବିନା ସ୍ଥିତି ନାହିଁ ତ କାହାରି
ତୁମେ ସୃଷ୍ଟି ସ୍ଥିତି ଲୟ ଆହେ ହରି
ତୁମେ ସତ୍ୟ ଶାନ୍ତି ତୁମେ ପ୍ରେମ ଭକ୍ତି
ଗତି ମୁକ୍ତି ତୁମ ନାମେ । ୩ ।



# ଚରଣ ଚିହ୍ନ ମୋ ଚିତାରେ ରହିଛି

ଚରଣ ଚିହ୍ନ ମୋ ଚିତାରେ ରହିଛି
    ଚିହ୍ନି ପାରୁନା କି ଚିନ୍ତାମଣି ?
ନ ଚିହ୍ନିଲ ନାହିଁ ତୁମର ତ ମୁହିଁ
    ଏ ସାରା ସଂସାର ଜାଣି । ୦ ।

କାନନର କରୀ ଯେହ୍ନେ ରାଜାର
ତେସନ ଏ ଦୀନ ସେବକ ତୋର
ରଖ ଯହିଁ ତହିଁ ତୋ ଆନନ୍ଦ ଯହିଁ
    କର ରଙ୍କ ଅବା ଦାନୀ । ୧ ।

ତୋ ଚରଣ ସେବା ଏକା ମୋ କାମ
ତୋ ଗୁଣ ଗାଇବା ଏକା ମୋ ଧର୍ମ
ଚରଣରେ ଠେଲି ଦେଲ ବୋଲି ଭୁଲି
    ନ ଯିବି ମୁରଲୀ ପାଣି । ୨ ।

ଚରଣ ଚନ୍ଦନ ମୋ ବିଜୟ ଟୀକା
ତୁମେ ମୋର କୃଷ୍ଣ ମୁଁ ତୁମ ରାଧିକା
ଅଧିକାର ଯେତେ ଥିଲା ଦେଲି ତୋତେ
    ତୁ ଯେଣୁ ମୋ ଧନମଣି । ୩ ।



# ମଉନ କାହିଁକି

ମଉନ କାହିଁକି କହୁନ କାହିଁକି
କହିଲେ କି ଯିବ ସରି
ନ କହିଲେ କୂଳ ଭାସି ମୋ ଯାଉଛି
କହିଦେଲେ ଯିବି ତରି । ୦ ।

ମୋର ଦୁଃଖ ଦେଖି ସହି ପାରୁନ କି
କହି ପାରୁନ କି କଥା ?
ହୋଇଲ କି ମୂକ ହେ କଳା ଶ୍ରୀମୁଖ
ହେଉଛି କି ମୁଣ୍ଡ ବଥା ?
ନ କହିଲେ ନାହିଁ ଚାହିଁ ଦେଲେ ଥରେ
ତୋ ମୁଖରୁ ହୁଏ ବାରି । ୧ ।

କର ନାହିଁ ଦୁଃଖ ମୋ କଳାମାଣିକ
ତୋ ବିରସ ମୁଖ ଦେଖି
ସହି ନ ପାରେ ମୁଁ ରହି ନ ପାରେ ମୁଁ
ଅନ୍ତର୍ଯ୍ୟାମୀ ନ ଜାଣୁକି ?
ଥିଲେ ଥାଉ ଯେତେ ଦୁଃଖ ଏ ଦୁଃଖୀର
ହସ ଟିକେ ପଡୁ ଝରି....
ତୋ ଅଧରୁ ବଂଶୀଧାରୀ । ୨ ।



# ତୋ ହସ ହସ ମୁହଁ ମୋତେ

ତୋ ହସ ହସ ମୁହଁ ମୋତେ
ଦିଶି ଯାଉଛି .... ଦିଶି ଯାଉଛି ।
ତୋ ଗଳାର ତୁଳସୀ ମାଳ
ବାସି ଯାଉଛି ... ବାସି ଯାଉଛି ।
(ତୋ) ଶ୍ରୀମୁଖ ଶୋଭା କି ମନ ଲୋଭା
(ତୋ) ନୟନ ଠାଣି ଭୁଲି ହୁଏନି
ଯିଏ ଥରେ ଦେଖିଛି ସେ ଝୁରି ହେଉଛି...
ଝୁରି ହେଉଛି ।
... ତୋ ହସହସ ମୁହଁ ମୋତେ ... । ୧ ।
ତୋ ମିଠା ମିଠା କଥା ମୋତେ
ଶୁଭି ଯାଉଛି ... ଶୁଭି ଯାଉଛି ।
ତୋ ବଇଁଶୀର ସୁର କାନେ
ବାଜି ଯାଉଛି ... ବାଜି ଯାଉଛି ।
(ତୋ) ଶ୍ରୀମୁଖ ବାଣୀ ମିଛ ହୁଏନି
(ତୋ) ଅମୃତ ଲେଖା ଉଡ଼େ ପତାକା
ଯିଏ ଥରେ ପଢ଼ିଛି ସେ ସତ ଜାଣିଛି... ସତ ଜାଣିଛି ।
.... ତୋ ହସହସ ମୁହଁ ମୋତେ ....। ୨ ।
ତୋ ଥିରିଥିରି ଚାଲି ମୋତେ
ଦିଶି ଯାଉଛି .... ଦିଶି ଯାଉଛି ।
ତୋ ଶ୍ରୀଅଙ୍ଗ ସୁବାସ ମୋତେ
ମୋହି ନେଉଛି .... ମୋହି ନେଉଛି ।
(ତୋ) ପଦ୍ମ ଚରଣ ନୂପୁର ସ୍ୱନ
(ତୋ) ସ୍ୱର୍ଣ୍ଣ ପାଦୁକା ଭବ ନଉକା
ଯିଏ ଆଶ୍ରେ କରିଛି ସେ ଭବୁ ତରିଛି .... ଭବୁ ତରିଛି ।
... ତୋ ହସ ହସ ମୁହଁ ମୋତେ ....। ୩ ।

# କରୁ ନାହଁ କୃପା

କରୁ ନାହଁ କୃପା କହିବି କିପରି
କରୁଣା ସାଗର ହରି
କୃପା ବିନା ସତେ ଅଛି କି ଜଗତେ
କୁହ କିଛି ସତ କରି । ୦ ।

ଦେଇଛ ଜନମ ଦେଇଛ ଦର୍ଶନ
ଦେଇଅଛ ନାମ ଦେଇଛ ଶରଣ
ଅବାଟରେ କେବେ ଖସିଗଲେ ପାଦ
ନେଉଅଛ ହାତ ଧରି । ୧ ।

ଭୁଲି ଯାଉଛି ମୁଁ ସବୁବେଳେ ତୋତେ
ଅଭୁଲା ସଙ୍ଗ ମୋ ଅଛ ଦୃଷ୍ଟି ପଥେ
ଅନ୍ତରେ ବାହାରେ ତୁମେ ସବୁଠାରେ
ଅଛ ପ୍ରଭୁ ବିଜେ କରି । ୨ ।

କରୁଣା କଣାରୁ କେବେ ଯଦି ଊଣା
ହୋଇଥାନ୍ତା ବାଜୁ ନଥାନ୍ତା ଏ ବୀଣା
ତୋର ନାମ ରସ ପାନରେ ସନ୍ତୋଷ
ନ ଲଭନ୍ତା ଏ କିଙ୍କରୀ । ୩ ।



# ଚିତ୍ତ ଦରପଣ କର ନିରିମଳ

ଚିତ୍ତ ଦରପଣ କର ନିରିମଳ
 ଦେଖିବି ତୋ ମୁଖଛବି,
ମନର ମଇଳା ସଫା କରିଦିଅ
 ଗଙ୍ଗାରେ ସ୍ନାନ କରିବି । ୦ ।

ଯେତେ ମୋ ପ୍ରୟାସ ହୋଇଲା ନିଷ୍ଫଳ
ଅମୃତ ସନ୍ଧାନେ ପାଇଲି ଗରଳ
ତମସାର ଗୃହେ ଆଲୋକର ଶିଖା
 ଦେଖାଅ ହେ ମହାରବି । ୧ ।

ସଂସାରର କଥା ଦିଏ ମହାବ୍ୟଥା
ଶୁଣିବାକୁ ମିଳୁ ତୋ ମଧୁର ଗାଥା
ଗାଇବାକୁ କଣ୍ଠେ ସୁମଧୁର ସୁର
 ଦିଅ ତୋ ଗୀତ ଗାଇବି । ୨ ।

ବୃଥା ଏ ସାଧନା ପୂଜା ଆରାଧନା
ବିଫଳ ସକଳ ପ୍ରେମଭକ୍ତି ବିନା
ଧର ନାହିଁ ଦୋଷ କର କୃପା ଲେଶ
 ତୋ କୃପାରେ ତରିଯିବି । ୩ ।



# ତୁମ୍ଭ ପରା ପ୍ରଭୁ ଥାଉଁ ଥାଉଁ

ତୁମ୍ଭ ପରା ପ୍ରଭୁ ଥାଉଁ ଥାଉଁ
କାହିଁକି ଯିବି ମୁଁ କାଶୀ ବାରାଣାସୀ
କି ଲାଭ ଆଶାରେ ଆଉ ... ମୋର ଶାନ୍ତିଧାମେ ଜୀବ ଯାଉ
ମହାବାହୁ .... ।୦ ।

ପ୍ରତି ଧୂଳିକଣା ଗାଏ ତୁମ୍ଭ ଗୁଣ
ପ୍ରତି ପ୍ରଭାତ ତୋ ନାମ,
ପ୍ରତିଟି ଶ୍ୱାସରେ ଢଳି ଢଳି ଆସ
ନବୀନ ନୀରଦ ଶ୍ୟାମ ।
ପ୍ରତିଟି ପ୍ରାଣରେ ତୋ ପ୍ରେମ ଜୁଆର
କୂଳ ଲଙ୍ଘି ଆସେ ଢେଉ...ମୋର ଶନ୍ତିଧାମେ ଜୀବଯାଉ
ମହାବାହୁ ।୧ ।

ତୋ ପାବନ ପୁଷ୍କରିଣୀ ମୋର ଗଙ୍ଗା
ଗୋଦାବରୀ ମହୋଦଧି
ତୋର ପାରିଷଦ ବୃନ୍ଦ ମୋ ସୁହୃଦ
ତୁମ୍ଭେ ମୋ ବନ୍ଧୁ ଦରଦୀ
ତୋର ତରୁଲତା ମୋ ଆଶ୍ରୟ ଦାତା
ଆଉ କେ ସାଧିବ ଦାଉ.. ମୋର ଶାନ୍ତି ଧାମେ ଜୀବ ଯାଉ
ମହାବାହୁ ।୨ ।

ତୋର ଶୁକ ଶାରୀ ଡାକନ୍ତି ଶ୍ରୀହରି
ସମୀର ଗାଏ ସଙ୍ଗୀତ
ମୟୂର ମୟୂରୀ ଆନନ୍ଦ ଉଲ୍ଲାସେ
କରନ୍ତି ମଧୁର ନୃତ୍ୟ
ସନ୍ଧ୍ୟା ଆରତିରେ ଶ୍ୱାନ ଶୁଭ ଶଙ୍ଖ
ହରିବୋଲ ସଙ୍ଗେ ଥାଉ ... ମୋର ଶାନ୍ତିଧାମେ ଜୀବଯାଉ
ମହାବାହୁ ।୩ ।
ତୀର୍ଥକ୍ଷେତ୍ର ଯେତେ ଅଛି ଏ ଜଗତେ
ସବୁଠି ତୁମରି ଲୀଳା;
ପଥଶ୍ରମ କରି ଗମନ୍ତି ଭକତେ
ମୋ ତୀର୍ଥ ତୋ କରମଳା,
କର କୃପା ବର୍ଷା କରିଛି ଭରସା
ତୋ ଚରଣେ ଚିତ୍ତ ରହୁ... ମୋର ଶାନ୍ତିଧାମେ ଜୀବଯାଉ
ମହାବାହୁ । ୪ ।
ଶାନ୍ତିଧାମ ସିନା ଅଟେ ମୋ ଅଯୋଧ୍ୟା
ଅଭିରାମ ମୋର ରାମ
ବଇକୁଣ୍ଠ ସିନା ବୀର ହନୁମାନ
ଦାସ୍ୟଭାବେ ଗରୀୟାନ
ଗୁପ୍ତ ବୃନ୍ଦାବନେ ଗୁପ୍ତ ଲୀଳା କର
ତୋ ବଇଁଶୀ ବାଜୁଥାଉ.. ମୋର ଶାନ୍ତିଧାମେ ଜୀବ ଯାଉ
ମହାବାହୁ ।୫ ।

ଦେହ ଦେବାଳୟେ ବିଦ୍ୟମାନ ତୁମେ
ଦେବତା ମୋ ଗୁରୁଦେବ
ସତ୍ୟ ଶାନ୍ତି ଦୟା କ୍ଷମାରେ ପୂରିଛ
ଦେଇ ଅଛ ଦିବ୍ୟଭାବ
ଦିବସ ରଜନୀ ତବ ଗୁଣ ଗୁଣି
ଆନନ୍ଦରେ ବହିଯାଉ ... ମୋର ଶାନ୍ତିଧାମେ ଜୀବ ଯାଉ
ମହାବାହୁ । ୬ ।

ତୁମ ବିରହରେ କି କଷ୍ଟପାଉଛି
ତୁମେ ଜାଣିବ କାହିଁକି ?
ଯଦିବା ଜାଣିବ ମୋତେ ଛାଡ଼ି ତୁମେ
ଦୂରେ ରହି ପାରିବ କି ?
ଜାଣି ଅଜଣା ତୁ ହୋଇଥିବୁ ଯଦି
କିସ ଜଣାଇବି ଆଉ ... ମୋର ଶାନ୍ତିଧାମେ ଜୀବ ଯାଉ
ମହାବାହୁ । ୭ ।



କାୟା ଥିଲେ ମାୟା ରହିଛି
ନିଶ୍ଚେ ଅହଂ କରିବ,
ଅହଂ ଦାସ ବୋଲି କହିଲେ
ଆଉ ଭୟ ନ ଥିବ ।।

# ଗୁରୁ ଗୋବିନ୍ଦ ଭଜରେ

ଗୁରୁ ଗୋବିନ୍ଦ ଭଜରେ ବାଇଆ ମନ
ଗୁରୁ ଗୋବିନ୍ଦଙ୍କୁ ତୁ ନ କର ଭିନ୍ନ । ୦ ।
ଯେହି ଗୁରୁ ସେ ଗୋବିନ୍ଦ ଜାଣିଥା ଭଲେ
ଏ ସଂସାରେ କେ ସମାନ ଗୁରୁଙ୍କ ତୁଲେ ?
ଗୁରୁଙ୍କୁ ନ ମଣ ନର ଗୁରୁ ସାକ୍ଷାତ ଈଶ୍ୱର
ଗୁରୁ ବ୍ରହ୍ମା ବିଷ୍ଣୁ ଶିବ ପରଂବ୍ରହ୍ମ ପରାତ୍ପର
ଗୁରୁ ବାକ୍ୟ ମହାରତ୍ନ କର ହୃଦୟର ହାର
ଗୁରୁ ପାଦପଦ୍ମ ସେବା କର ତୁହି ଅଙ୍ଗୀକାର
ଲଭିବୁ ସଦ୍‌ଗତି ଗୁରୁ ହେଲେ ପ୍ରସନ୍ନ । ୧ ।

ଜଗଦ୍‌ଗୁରୁ ଜଗନ୍ନାଥ ତୋହରି ଗୁରୁ
ଜଗତ ଜନର ବାଞ୍ଛା କଳପତରୁ
ତା ବିନୁ କେ ସମର୍ଥ ଖୋଲିବ ଜ୍ଞାନନେତ୍ର
ହରିବ କଳମଷ ଦେବଟି ନାମ ତତ୍ତ୍ୱ
ମାୟା ବନ୍ଧନ କାଟି ଦେଖାଇ ମୁକ୍ତିପଥ
ପରମାନନ୍ଦ ସ୍ରୋତେ କରିବ ନିମଜ୍ଜିତ
ତା' ବିନୁ କେ ଅଛି ଥୟ କରିବ ମନ ? । ୨ ।

ଭାଗ୍ୟରେ ଥିଲେ ଭେଟିବୁ ଗୁରୁବ୍ରହ୍ମଙ୍କୁ
ଶୂନ୍ୟରେ ଭେଳା ବାନ୍ଧିବୁ ଭବ ସିନ୍ଧୁକୁ
କୋଟି ଜନ୍ମ ସାଧନା ହେବ ତୋର ସଫଳ
କରୁଣାମୟ ସ୍ଥାନ ଦେବେ ସେ ପାଦତଳ
ଭକତି ଲତାରେ ତୋ ଫଳିବ ପ୍ରେମଫଳ
ଭୁଞ୍ଜିବେ ପ୍ରାଣବନ୍ଧୁ ବସି ତୋହରି କୋଳ
ସାର୍ଥକ ହେବ ଦୁର୍ଲଭ ମାନବ ଜନ୍ମ । ୩ ।

# ସବୁବେଳେ ନୂଆ

ସବୁବେଳେ ନୂଆ କେବେ ନୁହେଁ ପୁରୁଣା
ଶୁଣଲୋ ସହି ସଙ୍ଗାତ ପ୍ରଭୁ ମହିମା । ୦ ।

ଶୁଣୁଥିବୁ ଯେତେ ଯେତେ
ଶରଧା ବଢ଼ିବ ତେତେ
ବୁଡ଼ିବୁ ଭାବ ସରିତେ
ଭାସିବୁ ପ୍ରେମର ସ୍ରୋତେ
ଭାଙ୍ଗିଯିବ ମିଥ୍ୟା ଅଭିମାନ ବଡ଼ିମା । ୧ ।

ଯୁଗେ ଯୁଗେ ଅବତାର
ପ୍ରଭୁ କରୁଣା ସାଗର
ହରି ଅବନୀର ଭାର
ଭରି ନୟନରେ ନୀର
ଚଳନ୍ତି ଭକ୍ତକୁ ଦେଇ ବିଜୟ ବାନା । ୨ ।

ନାହିଁ ଆଦି ନାହିଁ ଅନ୍ତ
ସେ ଯେ ଅନାଦି ଅନନ୍ତ
ତା' ପରି କେ ଦୟାବନ୍ତ
ଖୋଜିଲେ ନାହିଁ ଜଗତ
ଡାକ ପଡ଼େ ଶୁଣ ହେ ମଣିମା ମଣିମା । ୩ ।



# ରାଧା ମାଧବ ହେ

ରାଧା ମାଧବ ହେ !
　　ବାଧା ଲାଗିଲାଣି ମୋତେ,
ଅଧା ଅଧ୍ କାଳ ଗଲାଣି ତ ମୋର
　　ପଡ଼ି ରହିଥିବି କେତେ ? । ୦ ।
ଥିଲା ମୋ ଶରଧା ଭଜି ଭଜି ରାଧା
　　ମାଧବ ନାମ ଅମୃତ,
ଧରିଥାନ୍ତି ହୃଦେ ତୁମରି ବିଗ୍ରହ
　　ଯମ ଯୋଡ଼ିଥାନ୍ତା ହାତ । ୧ ।
ତୁମରି ପାଦାବ୍ଜେ ଅରପି ଥାଆନ୍ତି
　　ପୂଜା ଫୁଲର ଅଞ୍ଜଳି,
ଧୋଇ ଦେଇଥାନ୍ତି ଶ୍ରୀପଦ କମଳ
　　ନୟନର ନୀର ଢାଳି । ୨ ।
ଏ ଚଗଲା ମନ କରି ନିବେଦନ
　　ପଶି ଥାଆନ୍ତି ଶରଣ,
ନ ଦେଲ ତ ଦେଖା　ଆହେ ଗିରିଟେକା
　　ତହିଁକି ମୁଁ ଅଭାଜନ ? । ୩ ।
ମୁଁ ଅଟେ ତୁମର ତୁମେ ପରା ମୋର
　　ଜନ୍ମ ଜନ୍ମାନ୍ତର ବଂଧୁ,
ନାହିଁ ଅନ୍ୟ ଆଶା ଶ୍ରୀପଦ ଭରସା
　　ସମ୍ବଳ ତୋ କୃପାବିନ୍ଦୁ । ୪ ।
ଏ ଘେନି ବିଶ୍ୱାସ ପୋଷିଛି ମୁଁ ମନେ
　　ଦେବ ନିଶ୍ଚେ ପ୍ରଭୁ ଦେଖା,
ପାରିବ କି ଭୁଲି ମୋ ହୃଦ ସଂଖାଳି
　　ରହିକି ପାରିବ ଏକା ? । ୫ ।



# କରୁଣା ସାଗର

କରୁଣା ସାଗର ... କର ଉଦ୍ଧାର ହେ !
ଭକତି ହୀନ ଜନରେ ଏଡ଼େ ନିଷ୍ଠୁର ହେ ! । ୦ ।

ଆରତେ ଗଜ ମୃଗୁଣୀ    ଡାକିଲେ ହେ ଚକ୍ରପାଣି
ବୈକୁଣ୍ଠ ତେଜି ତକ୍ଷଣି ହେଲ ହାଜର । ୧ ।

ଗରିବ ସୁଦାମା ଗଲା    ଲାଜେ ମାଗି ନ ପାରିଲା
ମନ କଥା ଅଜଣା କି ରହିଲା ତାର । ୨ ।

ଉଦ୍ଧବ ନ ପାଇ ଅନ୍ତ    ପୁଚ୍ଛା କଲା ଜଗନ୍ନାଥ
ଅନ୍ତିମେ ଲଭିଲା ତୁମ୍ଭ ପଦ୍ମପୟର । ୩ ।

ଜ୍ଞାନଦୀପ୍ତ ସେ ଭରତ    ବାହାରକୁ ଜଡ଼ବତ
ହୃଦୟେ ଆପିଲ ତାଙ୍କ ଜ୍ୟୋତି ତୁମ୍ଭର । ୪ ।

ଦୁର୍ଲଭ ଭକତି ଧନ    ତୁମ୍ଭେ ନ କରିଲେ ଦାନ
ପାଇବି କାହୁଁ କୁହତ ମୋ ହୃଦହାର । ୫ ।



# ଲୋଡ଼ା ଖାଲି ଖୋଲା ପ୍ରାଣ

ଲୋଡ଼ା ଖାଲି ଖୋଲା ପ୍ରାଣ,
ପାଇବାକୁ ହେଲେ ଦର୍ଶନ । ୦ ।

ନାମ ସିନା ବୀଜ ବିଶ୍ୱାସଟି ମୂଳ
ଶାଖା ପବିତ୍ରତା ହେତୁ ତାର ଜଳ
ବ୍ୟାକୁଳତା ପତ୍ର ଭକତି କୁସୁମ
ଆନନ୍ଦ ତା ଫଳ ଅମୃତର ସମ
ଏ ବୃକ୍ଷର ଯତ୍ନ କର ନିଶି ଦିନ
ରୂପ, ହେବେ ସେ ନିର୍ଗୁଣ ବ୍ରହ୍ମ । ୧ ।

ସଜାଡ଼ି ନିଅରେ ପୂଜା ଥାଳି ତୋର
ଗଡ଼ିଯାଏ ବେଳ ନ କର ଉଛୁର
ଭାବଟି ଚନ୍ଦନ ଧୂପ ସିନା ପ୍ରେମ
ଦୟା କ୍ଷମା ସତ୍ୟ ଆଦି ତୋ କୁସୁମ
ଦୀପ ତୋ ଦର୍ଶନ ତୁଳସୀ ତୋ ମନ
ଦେଇ, ପୂଜ ତୁ ଚକାନୟନ । ୨ ।



# ଦୁଃଖ ବୋଲି ଆଉ କିଛି

ଦୁଃଖ ବୋଲି ଆଉ କିଛି ନ ପାଏ ମୁଁ ଖୋଜି,
ସୁଖର ସଉଧ ତୁମ ବିନା ଯାଏ ଭାଜି । ୦ ।

ନିମିଷକ ପାଇଁ ଯେବେ ତୁମେ ଯାଅ ଲୁଚି
ଚଉଦିଗେ ଅନ୍ଧକାର ହୋଇଯାଏ ବିଞ୍ଚି
ଆଖିଲୁହେ ପିନ୍ଧା ଲୁଗା ଯାଏ ମୋର ଭିଜି । ୧ ।

ଟଳମଳ ହୁଏ ପାଦ ଘୂରିଯାଏ ମଥା
ଶୁଖିଯାଏ ତୁଣ୍ଡ ପୁଣି ନ ଫୁଟଇ କଥା
କି କରିବି କି କରିବି ନ ପାରେ ମୁଁ ବୁଝି । ୨ ।

ତୁମ ବିନା ଏ ସଂସାରେ ଲାଗେ ନାହିଁ ମନ
ଦିଶେ ନାହିଁ ଜଣେ ହେଲେ ଆପଣାର ଜନ
ତୁମ ପାଇଁ ସବୁ କିଛି ପାରିବି ମୁଁ ତେଜି । ୩ ।

ତୁମ ଛବି ନାଚିଯାଏ ଯେବେ ମୋ ନୟନେ
ଜାଗରଣେ ହେଉ ଅବା ଶୟନେ ସପନେ
ଆନନ୍ଦ ଢେଉରେ ମୁହିଁ ଯାଏ ସିନା ହଜି । ୪ ।



# କ୍ଷମ ଅପରାଧ ମମ

କ୍ଷମ ଅପରାଧ ମମ, ଆହେ ପୁରୁଷ ଉତ୍ତମ !
କରୁଣା ବାରିଧି ସିନା ତୁମେ ମୋର ଅଭିରାମ । ୦ ।

ଏ ଜୀବନେ ଯେତେ ଦୋଷ କରିଛି ଆହେ ପ୍ରାଣେଶ
କୃପା କଟାକ୍ଷ ପାତରେ ନିମିଷକେ ହେବ ଭସ୍ମ । ୧ ।

ଝରିବ ଅମୃତ ରସ, ପାନ କରି ହେବି ତୋଷ
ଫିଟିବ ଜ୍ଞାନ ନୟନ ତୁଟିବ ସଂସାର ଭ୍ରମ । ୨ ।

ମୁଖେ ତୋର ନାମ ଧରି କାଟିବି ଦିବା ଶର୍ବରୀ
ଏଥକୁ ମୋ ପାଇଁ ପ୍ରଭୁ ନ ହୋଇବ ନିରିମମ । ୩ ।

ବାଜି ମଳୟ ପବନ ପୁଲକିବ ତନୁମନ
କାଷ୍ଠ ହୋଇବ ଚନ୍ଦନ ଫୁଟିବ ଭକ୍ତି କୁସୁମ । ୪ ।

ଭଣେ ଅରକ୍ଷିତ ଦାସ ଶ୍ରୀପଦେ କରିବ ଦାସ
ଯେ କର୍ମେ ହେବ ସନ୍ତୋଷ ବାଛି ଦେବ ସେହି କର୍ମ । ୫ ।



# ତୁମ୍ଭ ପାଦ ତଳେ ପିଟି ପିଟି ମଥା

ତୁମ୍ଭ ପାଦ ତଳେ ପିଟି ପିଟି ମଥା
ଛୁଟି ଗଲା ରକତର ଧାର
ତଥାପି ଏ ଦୀନ - ହୀନ ପ୍ରତି ପ୍ରଭୁ
ପଡ଼ିଲା ନାହିଁ ତୁମ୍ଭ ନଜର
ଆଉ କେତେ କାଳ, କନ୍ଦାଇବ ଆହେ ନନ୍ଦବାଳ
ପରଖି ପରଖି ମନ ନ ମାନେ କି
ଭୃତ୍ୟର କି କଷ୍ଟଅଛ ବଳ । ୧ ।

କେତେ କେତେ ପାପୀ ତୁମ୍ଭ ନାମ ଜପି
ତରିଗଲେ ଭବ ଦୁଃଖ ନଦୀ
ମୋ ବେଳକୁ ପରା ନାବଟି ଦଦରା
ସରୁନାହିଁ ଦିନ କାନ୍ଦି କାନ୍ଦି
ଆହେ କର୍ଣ୍ଣଧାର, ଆଶା ଭରସା ତୁ ସବୁ ମୋର
ପାଦ ପଦ୍ମ ତରୀ ଦେଇ କରପାରି
ପ୍ରଣତି ଘେନ ମୋ ଶତବାର । ୨ ।



ହେଲ କି ପାଷାଣ ଦେଖି ମୋ କଷଣ
ଆଖି ରହିଲା କି ତହିଁ ଲାଖି ?
ପେଷି ଚକ୍ର ଗଦା ଶୂନ୍ୟ ହସ୍ତ ହେଲ
ଶ୍ରୀହସ୍ତକୁ ନ ଫେରିଲା ସେ କି ?
କି କରିବ ବୋଲି, ମୂକ ହୋଇଲ କି ଭାଳି ଭାଳି ?
ଉଦ୍ଧାରିବା ପାଇଁ ପାଦ ପଦ୍ମ ଦୁଇ
ବଢ଼ାଇ କି ନ ପାରୁଛ ଚଳି ? । ୩ ।

ସର୍ବମୟ କର୍ତ୍ତା ତେଜ ମନୁ ଚିନ୍ତା
ମନେ ପକା ଥରେ ନିଜ ବଳ
ଯେଉଁ ବଳେ ବଳୀ ହୋଇ, ଥିଲ ଦଳି
ଶୂନ୍ୟହସ୍ତେ କଂସ ଅଷ୍ଟମଲ୍ଲ
ଆହେ ଇଚ୍ଛାମୟ, ଇଚ୍ଛାରେ ସୃଷ୍ଟି ସ୍ଥିତି ପ୍ରଳୟ
ମୋ ଦୁଃଖ କି ଭାରି ହେବ ଆହେ ହରି
ଲାଘବେ ଇଚ୍ଛା ପୋଷିଲେ କହ ? । ୪ ।
ବାନ୍ଧିଣ ପତାକା ପକାଉଛ ଡକା
ଆସ ଛଡ଼ାଇବି ମନୁ ଦକା
ଖାଇ କେତେ ଧକ୍କା ଆସିଛି ମୁଁ ଏକା
ଏବେ କହ କେ କରିବ ରକ୍ଷା
ହେ ଦୁଃଖ ଭଞ୍ଜନ, ତୋ ଆଗରେ କରୁଛି ମୁଁ ପଣ
ନ ଫେରିବି ଆଉ ଯେତେ ଯାହା ହେଉ
ସବୁ କଲି ତୋତେ ସର୍ମପଣ । ୫ ।



# ତାକୁ କିଏ ଅବା ପାରିବ ଧରି

ତାକୁ କିଏ ଅବା ପାରିବ ଧରି
ପାରିଲେ ପାରିବ ସେହି ଏକା ସିନା
ଜୀଇ ଥାଉଁ ଥାଉଁ ଯେ ପାରେ ମରି । ୦ ।

ବିଷୟାରେ ଥାଇ ନ ଥାଏ
ଜଳେ ପଦ୍ମ ପତ୍ର ପରାୟେ
ସୁଖ ଦୁଃଖ ମାନ ଅପମାନ, ବନ
ଭବନ ଯେ ଥାଏ ସମାନ କରି । ୧ ।

ମାଟି ସୁନା ମିତ୍ର ଅଇରି
ସମଜ୍ଞାନ ଯେ ଥାଏ କରି
ଗର୍ବ ଅଭିମାନ ହିଂସା ଦ୍ୱେଷ କାମ
ସଭିଏଁ ଯା ପାଶେ ଯାଆନ୍ତି ହାରି । ୨ ।

ଧରିବାକୁ ଯେବେ ତୋ ମନ
ଏବେ ଠୁ କର ଟାଣପଣ
ନ ମାନରେ ବାଧା ଚାଲ ତୁହି ସିଧା
ଭେଟିବାକୁ ପ୍ରେମ ସିନ୍ଧୁ ଲହରୀ । ୩ ।



# ମୋ ହୃଦୟ ଉପବନେ

ମୋ ହୃଦୟ ଉପବନେ ଆସ ହେ କଳା ଭଅଁର ,
ସାଇତି ରଖିଛି ମୁହିଁ ତୋ ଲାଗି ମଧୁ ଭଣ୍ଡାର । ୦ ।

କେତେ ଜାତି ଫୁଲ ଫୁଟି
ବାସ ଯାଉଛି ଚହଟି
ନବୀନ ପୁଲକ ଭରେ ସହି ନ ପାରେ ଉଛୁର । ୧ ।

ଅଭିସାରିକା ସାଜିଛି
ନବ ସମ୍ଭାର ଆଣିଛି
ତନୁ ମନ ପ୍ରାଣ ଖୋଲି କରିବି ତୋତେ ନିଜର । ୨ ।

ତୁମେ ଯେବେ ନ ଆସିବ
ସବୁ ସିନା ବୃଥା ହେବ
ଝରି ଝରି ସରିଯିବ ଆସ ହେ ମୋ ମନଚୋର । ୩ ।



ବିଶ୍ୱାସ ବିନା ଯେତେ କର୍ମ
ସେଥିରେ ନାହିଁ ଫଳ,
ଅବିଶ୍ୱାସ ଘରେ କେବଳ
ସର୍ବଦା ଅମଙ୍ଗଳ ।।

# ଏତିକି ମିନତି ମୋର

ଏତିକି ମିନତି ମୋର
କାନ ଡେରି ଶୁଣିବ କି ଠାକୁର ହେ !
ଆଜ୍ଞା ହେଲେ ଜଣାଇବି ଛାମୁର, ଠାକୁର ହେ ! ।୧।

ଯେଣିକି ଯିବ ନୟନ
ଦିଶୁଥିବ ତୁମ୍ଭ ଚନ୍ଦ୍ରବଦନ ହେ !
ଦୃଷ୍ଟି ପଥେ ନ ଆସିବ ଆନ, ଠାକୁର ହେ ! ।୨।

ଏ ଯେଉଁ କର୍ଣ୍ଣ ଗହ୍ୱର
ପବିତ୍ର ହେବ ଶୁଣି ତୁମ୍ଭ ଗୀର ହେ !
ବହିଯିବ ନେତ୍ରୁ ନୀର ଧାର, ଠାକୁର ହେ ! ।୩।

ନାସା ଜପି ତୁମ୍ଭ ନାମ
ପାଦ ତୁଳସୀ କରିବ ଆଘ୍ରାଣ ହେ !
ପ୍ରସାଦରେ ଜିହ୍ୱା ହେବ ଧନ୍ୟ, ଠାକୁର ହେ ! ।୪।

ପାଦ ନ କରିବ ଗତି
ଯହିଁ ନ ଥିବ ତବ ଦିବ୍ୟ ସ୍ମୃତି ହେ !
ହସ୍ତ କରୁଥିବ ପୂଜା ନୀତି, ଠାକୁର ହେ ! ।୫।

ପଦ୍ମପାଦେ ମନ ଥିବ
ମକରନ୍ଦ ପାନେ ହୃଷ୍ଟ ହୋଇବ ହେ !
ଘଉଡ଼ାଇଲେ ନ ବାହୁଡ଼ିବ, ଠାକୁର ହେ ! ।୬।



# ଇଚ୍ଛାମୟ ହେ !

ଇଚ୍ଛାମୟ ହେ !
ଇଚ୍ଛାରେ କରୁଛ ଖେଳ,
ଚନ୍ଦ୍ର ସୂର୍ଯ୍ୟ ଆତଯାତ ହେଉଛନ୍ତି
ମେଘ ବରଷୁଛି ଜଳ । ୦ ।

କେଉଁ ବୃକ୍ଷେ ମିଠା କେଉଁ ବୃକ୍ଷେ ଖଟା
ପୁଣି କଷା ପିତା ଫଳ
ଫଳ ଗୋଟିକରେ ସୁଆଦ ଗୋଟିଏ
ଅମୃତ କେ ମହାକାଳ । ୧ ।

ତରୁଲତା ମାନ କେଡ଼େ ଶୋଭାବନ
ଧରି ନାନା ରଙ୍ଗ ଫୁଲ,
ଶ୍ୱେତ ହରିତ ପୀତ ପୁଣି ଲୋହିତ
ମହକେ ମନ ପ୍ରଫୁଲ୍ଲ । ୨ ।

କାକ ପିକ ଶୁକ ସାରିକା ଡାହୁକ
ବରହୀ ବକ ମରାଳ,
ଭିନ୍ନ ଭିନ୍ନ ରଙ୍ଗ ଭିନ୍ନ ଭିନ୍ନ ରବ
କେ କର୍କଶ କେ ମଧୁର । ୩ ।



କାହିଁ ବହିଯାଏ  କଳ କଳ ନାଦ
କରି ଝରଣାର ଜଳ,
ସାଗର ତରଙ୍ଗ  ଆଣଇ ଆତଙ୍କ
ନଦୀ ଜଳ ସୁଶୀତଳ । ୪ ।

ମଳୟ ମରୁତ  କରେ ଆମୋଦିତ
ବଞ୍ଚାଏ ଏ ଜୀବକୁଳ,
ପୁଣି ପ୍ରଭଞ୍ଜନ  ରୂପେ ଆଗମନ
କରି ଭାଙ୍ଗେ ଧୂଳି ଘର । ୫ ।

କେଉଁ ଜୀବ ମଧ୍ୟେ  ଅବତରି ତୁମେ
ସଜାଅ ତାକୁ କାଙ୍ଗାଳ,
କରି ଆପଣାର  କର ହେ ଉଦ୍ଧାର
ବଢ଼ାଇ ପଦ କମଳ । ୬ ।

କାହାକୁ ଦର୍ଶନ  ଦେଇ କର ଧନ୍ୟ
କେ ନ ପାଏ ଥଳ କୂଳ,
କେଉଁ ଦୀନହୀନ  କରଇ କ୍ରନ୍ଦନ
କାହାର ଚିତ୍ତ ବ୍ୟାକୁଳ । ୭ ।
ବୁଝି ଅବୁଝା ମୁଁ  ଇଚ୍ଛାମୟ ଇଚ୍ଛା
ପୂରଣ ହେବ କେବଳ,
ଜୀବ ଥିବା ଯାଏଁ କରିବି କଟାଳ
ବଢ଼ାଉଥିବି ଜଞ୍ଜାଳ । ୮ ।

# ମନ ମୋହନ ହେ !

ମନ ମୋହନ ହେ !
ଯେତେ ବୁଝାଇଲେ ମନ ମୋଟେ ମୋର ବୁଝେନା
କିଛି ହୋଇନାହିଁ ହେବ ନାହିଁ
ତୁମ ଇଛା ବିନା । ୦ ।

ମାତୃଗର୍ଭେ ଦରଶନ ଦେଇଥିଲ ନାରାୟଣ
ଘୁଞ୍ଚାଇଲ ମୋ କଷଣ ଦେଲ ଯେଉଁ ଦିବ୍ୟଜ୍ଞାନ
ଧରାରେ ପଡ଼ିଲା ବେଳୁଁ ପାଶୋରିଲି ସବୁ ସିନା । ୧ ।

ଶାନ୍ତି ଧାମେ ନେଲ ଟାଣି ହେ ପ୍ରଭୁ ମୁରଲୀ ପାଣି
ଦେଖାଇ ଅପୂର୍ବ ଠାଣି ଏ ମନକୁ ନେଲ କିଣି
ଲୁଚିଲ ଏବେ କାହିଁକି କୃପାନେତ୍ରେ ବାରେ ଅନା । ୨ ।

ବସିଅଛି ଏବେ ମୁହିଁ ତୁମ ପଥ ଚାହିଁ ଚାହିଁ
ତୁମ ବିନା ମୋର କେହି ନାହିଁ ହେ ଜଗତ ସାଇଁ
ଅରକ୍ଷିତ ଦାସ ପାଇଁ ପତିତ ପାବନ ବାନା । ୩ ।



# ବାଇମନ ଧର ଧର

ବାଇମନ ଧର ଧର
ବାର ଘରେ ପଶେ ଚୋର
ଦୃଷ୍ଟି କି ତୋ ଖଞ୍ଜି ନେଇ ଜାଣିବୁ ତା କାରବାର । ୦ ।

ବଡ଼ ଚତୁର ସେ ଚୋର
ଧୂଳି ଦେଇ ତୋ ଆଖିର
ଲୁଟିନିଏ ତୋ ସଂପଦ ଉଜାଡ଼ିଲାଣି ତୋ ଘର । ୧ ।

ଚୋର ଗତେ ସାବଧାନ
ହେଉ ଆରେ ବାଇମନ
କାନ୍ଦିଲେ ଆଉ କି ହେବ କପାଳରେ ଦେଇ କର । ୨ ।

କହେ ଦାସ ଅରକ୍ଷିତ
ସଦା ତୁ ରହ ଜାଗ୍ରତ
ଚୋର ହେବ କରାୟତ ନ ଥିବ ଉପାୟ ତାର । ୩ ।

ଶ୍ରୀଗୁରୁ ଦେବ ଚରଣ
ବେଳହୁଁ କର ସ୍ମରଣ
ପଢ଼ାଇବେ ଚୋରଧରା ବିଦ୍ୟା ଅତି ଯତନର । ୪ ।



# ଦେବ ନାହିଁ ଯେବେ

ଦେବ ନାହିଁ ଯେବେ ଶ୍ରୀପଦେ ଶରଣ
ସେବକେ ବହି କରୁଣା,
ନେବ ନାହିଁ ଯେବେ ଏ ଦୁଃଖ କଷଣ
କରି ଦିଅ ପ୍ରଭୁ ମନା । ୧ ।

ଶ୍ରୀମୁଖରୁ ତବ ଶୁଣିଲେ ଏତିକି
କରିବି ନାହିଁ ଜଞ୍ଜାଳ,
ଡାକିବିନି ଆଉ ଯାହା ହେଲେ ହେଉ
ସବୁ ସିନା ମୋ କପାଳ । ୨ ।

ଜାଣିଥାନ୍ତି ଯେବେ ନିଦାରୁଣ ବୋଲି
କରି ନ ଥାନ୍ତି ମୁଁ ଆଶ,
ବାଟ ମଝିଟାରେ ହଟହଟା ହୋଇ
ଛାଡ଼ି ନ ଥାନ୍ତି ନିଃଶ୍ୱାସ । ୩ ।

ମନରେ ଥିଲା ତୋ ଏତେ କଥା ଯେବେ
କାହିଁକି କଲୁ ଛଳନା,
ଛଳିଆ ତୁ ଜଗା କାଳିଆ ବୋଲି ମୁଁ
ଜାଣି ବି ହେଲି ଅଜଣା । ୪ ।

ଭାସି ଯାଇଥାନ୍ତା ଏ ଜୀବନ ପୋତ
ନ ଥାନ୍ତା ତା ଅବଶେଷ
ନ ଥାନ୍ତା କିଛି ମୋ କହିବାକୁ ତୋତେ
ଦେବା ପାଇଁ ଅବା ଦୋଷ । ୫ ।

କାହିଁକି ନିରାଶ ପ୍ରାଣରେ ମୋହର
କଲୁ ଆଶାର ସଞ୍ଚାର,
କିଏ କହୁଥିଲା ଏ ଦଦରା ନାବେ
ହେବା ପାଇଁ କର୍ଣ୍ଣଧାର । ୬ ।

ଡାକି ତ ନ ଥିଲି ଆସ ଆସ ବୋଲି
କରି ନ ଥିଲି ମୁଁ ଅଳି,
ଟାଣି ନେଲୁ ନିଜେ ହାତ ଧରି ତୁ'ଯେ
ଦେଖାଇବୁ ପଥ ବୋଲି । ୭ ।

କିଏ କହୁଥିଲା ମନ ମୋହିବାକୁ
ଦେଖାଇ ଅପୂର୍ବ ଛଟା,
କିଏ କହୁଥିଲା ମୋ ଚଲା ପଥରୁ
ଏଡ଼ାଇ ଦେବାକୁ କଣ୍ଟା ? । ୮ ।

ଅଯାଚିତ ଭାବେ ଏତେ କଲୁ ଯେବେ
ଦୀନ ଜନେ ଦୟା ବହି,
ଅପରାଧ କିବା କଲି ଏତେ ବେଳେ
ଲୁଚିଲୁ କେଉଁଠି ଯାଇ ? । ୯ ।

ଭାବିଛୁ କି ମନେ ଚତୁରତା ପଣେ
ଖସି ଯିବୁ ଦେବି ଛାଡ଼ି,
ନାହିଁ ସିନା ଭାବ ନାହିଁ ସିନା ପ୍ରେମ
ଅଛି ଲଙ୍ଗଳ ଦଉଡ଼ି । ୧୦ ।



ଭଲରେ ନ ହେଲେ ମନ୍ଦରେ ହୋଇବ
ତହିଁକି ଅଛି ତିଆର,
ଗଲାଣି କି ମନୁ ଶ୍ରୀବସ୍ତ ଗୋଇଠା
ଉଗ୍ରସେନର ପାହାର ? । ୧୧ ।

ମନ ଖୋଲି ସବୁ କହିଦେଲି ତୋତେ
ଏଣିକି କର ଯା ଇଚ୍ଛା,
ଖାଲ ଢିପ ସବୁ ଦିଶୁଛି ସମାନ
କାମୁଡ଼ିଛି ମୋତେ ବିଛା । ୧୨ ।

ସେ ମୋହନ ମନ୍ତ୍ର କର ହେ ପ୍ରୟୋଗ
ଝଡ଼ି ଯାଉ ସବୁ ବିଷ,
ଲେଶ ମାତ୍ର କୃପା ଏ ଅଧମ ପ୍ରତି
କର ନ ବହିଣ ରୋଷ । ୧୩ ।



ନିର୍ମଳ ଭକତି କରିଲେ
ପ୍ରଭୁ ଦୂରେ ନାହାନ୍ତି,
ଯା'ର ଭକ୍ତିରେ ମଳି ଥାଇ
ତାକୁ ଭୁଲାଇ ଦ୍ୟନ୍ତି ।

# ମୁଁ ଦିନକ ପାଇଁ

ମୁଁ ଦିନକ ପାଇଁ
ପ୍ରଭୁ ! ତବ ପଦେ ସ୍ନେହ କରିନାହିଁ,
ଲଭିବି କେମନ୍ତେ କହିଦିଅ .ମୋତେ
ବୁଦ୍ଧି ବାଟ କିଛି ଦିଶୁନାହିଁ । ୦ ।

ଯେଉଁ କର୍ମେ ତୁମ୍ଭେ ହେବ ପ୍ରୀତ
ସେ କର୍ମ ଦିନେ କରିନାହିଁ ତ
ବିଷୟା ସୁଖରେ ମଜ୍ଜି ନିରନ୍ତରେ
ଭଲ ମନ୍ଦ କିଛି ନ ଜାଣଇ । ୧ ।

କର୍ମଫଳ ମୁଁ କରଇ ଗ୍ରାସ
ତୁମ୍ଭେ ଥାଅ ସିନା ଉପବାସ
ତୋର ଧନ ତୋତେ ଦେଇ ମୁଁ ନ ଜାଣେ
ନିଅ କୃପାନେତ୍ରେ ବାରେ ଚାହିଁ । ୨ ।

କରି ନାହିଁ ତୁମ୍ଭ ରୂପ ଧ୍ୟାନ
କରିନାହିଁ ତୁମ୍ଭ ଗୁଣ ଗାନ
କରିନାହିଁ ଦାନ ଅବା ତୀର୍ଥସ୍ନାନ
ପୂଜା ବିଧି ନ ଜାଣଇ ମୁହିଁ । ୩ ।

ତୁମ୍ଭେ ସିନା ମୋର ପ୍ରାଣପତି
ତୁମ୍ଭେ ସିନା ଅଗତିର ଗତି
ନ ଜାଣେ ଭକତି ହେଲିଣି ଅସତୀ
ରଖ ଦେଇ ପାଦପଦ୍ମ ଛାଇ । ୪ ।

# ରଜ ଗୁଣ ପ୍ରଭାବରେ

ରଜଗୁଣ ପ୍ରଭାବରେ ଏ ମନ ହେଲା ସନ୍ଦେହୀ
ଏ ଘେନି ତୁମ ପାଶକୁ ନ ପାରେ ମୁଁ କେବେ ଯାଇ । ୦ ।

ନ ହୁଏ ତମ ଅଧୀନ
ସାତ୍ତ୍ୱିକେ ନ ରସେ ମନ
ନଈ ମଝିଟାରେ ପଡ଼ି ଉବୁଟୁବୁ ହେଉଥାଇ । ୧ ।

ନ ଦିଶେ ଆଶା ଭରସା
ପଡ଼ିଅଛି ଶନି ଦଶା
ଯେ ଡାଳକୁ ଧରେ ମୁହିଁ ସେ ଡାଳ ଭାଙ୍ଗି ପଡ଼ଇ । ୨ ।

କରୁଣା କଟାକ୍ଷ ଥରେ
ପଡୁ ଏ ଦୀନ ଉପରେ
ଦୀନ ହେଉ ମହାଜନ ତୁମରି ଦରବ ନେଇ । ୩ ।

କହେ ଅରକ୍ଷିତ ଦାସ
ପିନ୍ଧାଅ ଭିକାରୀ ବେଶ
ଏ ଆୟୁଷ ହେଉ ଶେଷ ତୁମ୍ଭ ନାମ ଗାଇ ଗାଇ । ୪ ।



# ପ୍ରାଣପ୍ରିୟ ଅଭିରାମ

ପ୍ରାଣପ୍ରିୟ ଅଭିରାମ ! ନିଅ ପ୍ରଣାମ,
ମୁଁ ସିନା ହୋଇଛି ଜୀବ ତୁମେ ପରମ । ୦ ।

ଏ ଦେହ ତୁମ ମନ୍ଦିର ନ ଜାଣକି ହୃଦହାର
ଶତ୍ରୁଙ୍କୁ କରି ସଂହାର କର ଆରାମ ।୧।

ମୁଁ ପରା ଦାସାନୁଦାସ ତୁମେ ମୋର ହୃଦଈଶ
ପାଳିବି କର ଆଦେଶ କିବା ସରମ ? । ୨ ।

ମଣିବି ନିଜକୁ ଧନ୍ୟ ଥିଲେ ତୁମ୍ଭ ସନ୍ନିଧାନ
ନାଚି ନାଚି ଗାଉଥିବି ତୁମରି ନାମ । ୩ ।

ତୁମ୍ଭେ ଯନ୍ତ୍ରୀ ମୁହିଁ ଯନ୍ତ୍ର ତୁମ୍ଭ ନାମ ମୋର ମନ୍ତ୍ର
କି ଅବା କରି ପାରିବ ସେ ଦୁଷ୍ଟ ଯମ ? । ୪ ।

ଅରକ୍ଷିତ ଦାସ ଭଣେ ଭ୍ରମୁଛି ମୁଁ ମାୟାବଣେ
ବତାଇ ଦିଅ କରିବି କେଉଁ କରମ । ୫ ।



# କେତେ ଆଉ ଶୋଇବୁରେ

କେତେ ଆଉ ଶୋଇବୁରେ ପାଗଳା ମନ ?
ଆଖି ମେଲି ଦେଖ ଥରେ ହେଲାଣି ଦିନ । ୦ ।

ପୂରୁବ ଦିଗେ ସୂରୁଯଙ୍କର ରୋଷଣୀ
ଦେଖି ଲାଜେ ନିଶାମଣି ଲୁଚି ଗଲେଣି
କାଉ କଲେଣି କାଆ     ଧନ ମୋର ଉଠିଆ
ଖେଳ ସାଥୀ ତୋହର     ଦାଣ୍ଡ ଦୁଆରେ ଠିଆ
ଡାକନ୍ତି କେତେ ମତେ     ଶୁଭୁନି କିବା ତୋତେ ?
ରୁଷି ପଳାଇବ ସେ     ନ ଉଠିବୁ ଯେମନ୍ତେ
ମନାଇ ପାରିବୁ କିବା କଲେ ଗୁମାନ ? । ୧ ।

ଶୋଇଲା ପୁଅର ସିନା ବୁଡ଼ିବ ଭାଗ
ଚତୁର ହୋଇବ ଯେହୁ ପାଇବ ଲାଭ
ଭାଙ୍ଗ ଏବେ ଅଳସ     ପାଇବୁ ଯେବେ ଯଶ
ଦେଖିବୁ ନିତ୍ୟ ରାସ     ମନେ ହେବୁ ସନ୍ତୋଷ
ନୋହିଲେ ନରଦେହ     ଧାରଣ ଅକାରଣ
ନିଜ ସର୍ବନାଶକୁ  କରିବୁ ନିମନ୍ତ୍ରଣ
କପାଳରେ ଲେଖା ହେବ ଖାଲି କଷଣ । ୨ ।



# ବିତିଗଲା କେତେ ଦିନ

ବିତିଗଲା କେତେ ଦିନ କେତେ କେତେ ରାତି
ନ ପାଇଲି ଦରଶନ ପ୍ରଭୁ ଲକ୍ଷ୍ମୀପତି ।
ଆକାଶ ପାତାଳ କେତେ ଭାବିଥିଲି ମନେ,
ମନ ଖୋଲି ସବୁ କଥା କହିବି ତୋ କାନେ ।

ଶୀତଳ ଜଳରେ ନିତି କରାଇବି ସ୍ନାନ,
ପିନ୍ଧାଇବି ନିଜ ହାତେ ସୁଝୀନ ବସନ ।
କସ୍ତୁରୀ ତିଳକ ରେଖା ଆଙ୍କି ଲଲାଟରେ,
ଅଗୁରୁ ଚନ୍ଦନ ବୋଳି ନୀଳ କଳେବରେ ।

ନାନା ଜାତି ବନଫୁଲେ ଗୁନ୍ଥି କେତେ ମାଳ,
ସଜାଇବି ଶ୍ୟାମ ତନୁ ବରଜ ସୁନ୍ଦର ।
ଶ୍ରୀକରେ ମୋହନ ବେଣୁ ପାଦରେ ନୂପୁର,
କଟିରେ କିଙ୍କିଣୀ କର୍ଣ୍ଣେ ମକର କୁଣ୍ଡଳ ।



କନ୍ଧରେ ଉତ୍ତରୀ ଶିରେ ଦେବି ଶିଖିପିଚ୍ଛ,
ବ୍ୟଜନ କରିବି ହସ୍ତେ ଧରି ପୁଷ୍ପଗୁଚ୍ଛ ।
ବସାଇବି କୋଳେ ମୋର ଅତି ସ୍ନେହ ଭରେ,
ସର ଲବଣୀ ଭୁଞ୍ଜାଇ ଯତନେ କାହ୍ନୁରେ ।

ଶୁଆଇବି ଫୁଲ ଶେଯେ ମଜା ଗପ କହି,
ଗପ କହୁ କହୁ ନିଜେ ପଡ଼ିବି ମୁଁ ଶୋଇ ।
କାହିଁ ଗଲା ସେହି ଆଶା କାହିଁ ଅଛି ମୁହିଁ,
ନ ଜାଣେ କାହିଁ ଗଲା ମୋ ସେହି ଭାବଗ୍ରାହୀ ।

ଅନ୍ତରୁ ପୋଛିଲ ଅବା ଲୁଚିଛ ଗୋପନେ,
ଉଢ଼ାଳେ ରହି ଦେଖୁଛ ଅଛି କି ନା ମନେ ।
ସହି ନ ପାରଇ ଆଉ ଦିଅ ବାରେ ଦେଖା,
ଶାନ୍ତ କର ତପ୍ତ ପ୍ରାଣ ପରାଣର ସଖା ।



ପବିତ୍ର ଈଶ୍ୱର ମନ୍ଦିର
ଅଟେ ଏହି ଶରୀର,
ରାଧାକୃଷ୍ଣ ଖେଳୁଅଛନ୍ତି
ଭକତଙ୍କୁ ଗୋଚର ।।

# ପ୍ରଭୁ ! ତୁମେ ମୋ କୁଣିଆ ଆଜି

ପ୍ରଭୁ ! ତୁମେ ମୋ କୁଣିଆ ଆଜି,
କେମିତି ଚିହ୍ନିବି ଦୁଆରରେ ଠିଆ
ଭିକାରୀର ବେଶ ସାଜି, ପ୍ରଭୁ.. । ୦ ।

ଅଙ୍ଗର ଭୂଷଣ କେଣେ ଗଲା ତୁମ
କଟି ଦେଶେ ଛିଣ୍ଡା ବାସ
ନୁଖୁରା ମୁଣ୍ଡରେ ତେଲ ବାଜି ନାହିଁ
ଫୁରୁଫୁରୁ ଉଡ଼େ କେଶ
ଏ ରୂପକୁ ଦେଖି ଆଖି ଯାଏ ଲାଖି
ନ ପାରେ ମୁଁ କିଛି ବୁଝି, ପ୍ରଭୁ.. । ୧ ।

କନ୍ଧେ ଭିକ୍ଷା ଝୁଲି ହାତେ ଭିକ୍ଷା ଥାଳି
ଧରି ବୁଲ ଦ୍ୱାର ଦ୍ୱାର
କି ମାଗୁଛ ତୁମେ କିଏ ବା କି ଦେବ
ଜଗତ ଟା ତ ତୁମର ?
ଦେଇତ ସାରିଛି ଦେହ ମନ ପ୍ରାଣ
ଆଉ କି ରଖିବି ବାଜି, ପ୍ରଭୁ... । ୨ ।

ତିନି ପାଦ ଭୂମି ମାଗିଥିଲ ଦାନ
ବାମନ ରୂପରେ ହରି
ବଳୀ ଦେଲା କଥା ଶେଷେ ଦେଲା ମଥା
ସତ୍ୟକୁ ରଖି ନ ପାରି
କର୍ଣ୍ଣ କଲା ପଣ ଦେବାକୁ ଭୋଜନ
ପୁତ୍ରର ମମତା ତେଜି, ପ୍ରଭୁ... । ୩ ।

ଆଉ ଦିନେ ପ୍ରଭୁ ! ଆସିଥିଲ ତୁମେ
ଏବେ ବି ପଡୁଛି ମନେ
ତୁମରି ପବିତ୍ର ଜନମ ତିଥିର
ସେ ଅଳସ ଅପରାହ୍ନେ
ଦେଇନି ସମ୍ମାନ ନ କରିବ ମାନ
ଲୋକାଚାରରେ ମୁଁ ମଜ୍ଜି, ପ୍ରଭୁ.... । ୪ ।

ରଥ ପରେ ଉଭା ହେବାର ସେ ଶୋଭା
ଦେଖି ବିଗଳିତ ଚିତ୍ତ
ଅନ୍ତରଯାମୀଙ୍କୁ ଅନ୍ତର ବେଦନା
ଅଛି କି ଅବା ଗୁପତ
ଆଉ କି ଅଧିକ ଜଣାଇବି, ଦିନ
ଯାଉ ତୁମ୍ଭ ନାମ ଭଜି, ପ୍ରଭୁ !.... । ୫ ।



ମାତା ଯେଉଁପରି ପୁତ୍ରର
ମଳ, ମୂତ୍ର ପୋଛଇ,
ମେହେନ୍ତର ସେହି ପରାୟେ
ଶୁଣ ସକଳ ଭାଇ ।।

# ଖୋଲି ଦେ ମାଆ ଦୁଆର

ଖୋଲି ଦେ ମାଆ ଦୁଆର
ମୁଁ ପରା ବାଳୁତ କୁମର ।
ଦିଅଁ ଦେଖି ଯିବି ପରାଗୋ
ତୋ କୃପା ହୋଇଲେ ପରାଗୋ ।

କାମ କ୍ରୋଧ ଲୋଭ ମୋହାଦି
ମଦ ମାତ୍ସର୍ଯ୍ୟ ହେଲେ ବାଦୀ ।
କର ମା ବିନାଶ ଏହାଙ୍କୁ
ଆଣି ଦିଅ ମୋର ଶ୍ୟାମଙ୍କୁ ।

ଜୟ ମା ଦୁର୍ଗତି ନାଶିନୀ
ତୁହି ମା କୁଳ କୁଣ୍ଡଳିନୀ ।
ତୁହି ମା ହୋଇଲେ ପ୍ରସନ୍ନ
ହସ୍ତେ ଧରେ ଚାନ୍ଦ ବାମନ ।

ନିତ୍ୟଧାମ ବୃନ୍ଦାବନରେ
କୃଷ୍ଣ ଖେଳେ ରାଧା ସଙ୍ଗରେ ।
ଦିଅ ମାଆ ବାଟ ଦେଖାଇ
ପଣତ କାନିରେ ଘୋଡ଼ାଇ ।

ଦେଖାଅ ବାରେ ସେ ରାହାସ
ତୁଟିବ ସଂସାର କଲ୍ମଷ ।
ସେବକ ପଣରେ ଖଟାଅ
କୃପା ନେତ୍ରେ ବାରେ ଅନାଅ ।

ନୋହିଲେ ତୋହର କରୁଣା
ନିଶ୍ଚେ ହୋଇବି ବାଟବଣା ।
ଅରକ୍ଷିତ ଦାସ କହଇ
ମାଆ ସିନା ବାପ ଭେଟାଇ ।



ଯାହାକୁ ଯାହା ଦତ୍ତ କରି
ଅଛନ୍ତି ପଦ୍ମନାଭ,
ପରଧନ ପରସ୍ତିରୀକି
ଆଉ ନ କର ଲୋଭ ।।

# ହାରିଗଲି, ଭୟ ସିନା ଏଇଥି ପାଇଁ

ହାରିଗଲି, ଭୟ ସିନା ଏଇଥି ପାଇଁ
ମାୟା ପଙ୍କେ କାଳେ ପ୍ରଭୁ ! ଦେବ ବୁଡ଼ାଇ । ୦ ।

ଶ୍ରୀମୁଖରେ ଘୋଷଣା କରି ଥିବାରୁ ଭାବନା
କର ଯୋଡ଼ି ମିନତି କରେ ହୃଦୟପତି
ଦୟା ରଖିଥିବ ଦୀନହୀନର ପାଇଁ । ୧ ।

ପାରିବି ବୋଲି ଟାଣ ଥିଲା ମୋ ଯେତେ ଜାଣ
ମିଳାଇ ଗଲା ପାଣି ଫୋଟକାର ସମାନ
ନିଜ ବଳେ କରିବାକୁ ଶକତି କାହିଁ ? । ୨ ।

ଶୋଇବି ନାହିଁ ବୋଲି ଯାହା ମୁଁ ବିଚାରିଲି
ନୟନ ଯୁଗଳେ ମୋ ଅଳସ ଦେଲ ଭରି
ମନଭୁଲା ଦିବାସ୍ୱପ୍ନେ ଦେଲ ଭୁଲାଇ । ୩ ।

ତୋର ସଙ୍ଗରେ ମୁହିଁ ପାରିବି ଅବା କାହିଁ
ଜଣେ ଜିଣିଛି ବୋଲି ସଂସାରେ ଶୁଣା ନାହିଁ
ଆପଣାର ନିଅ କରି ବୁକେ ଜଡ଼ାଇ । ୪ ।



# ଶ୍ରୀଚରଣ ତଳେ

ଶ୍ରୀଚରଣ ତଳେ ନ ଲୋଟିଲା ଯଦି
ଗର୍ବିତ ମସ୍ତକ ମୋର
କିବା ପ୍ରୟୋଜନ ପେଶି ସୁଦର୍ଶନ
କାଟି ନିଅ ନିଜ କର । ୧ ।

ତୋ ରୂପ ମାଧୁରୀ ଦର୍ଶନ ନ କରି
ଭ୍ରମିଲେ ଯେବେ ନୟନ
ଫୁଟାଇ ତାହାଙ୍କୁ ଏ ଘୋର ନରକୁ
ଉଦ୍ଧର ହେ ନାରାୟଣ । ୨ ।

ତବ ନାମ ଗୁଣ ନ କରି ଶ୍ରବଣ
ଆନ ରସେ ଯେବେ ମନ
ବଧିର ନ କରି କାହିଁ ପାଇଁ ହରି
ଦେଉଛ ଏତେ କଷଣ ? । ୩ ।

ନାମ ସୁଧା ଛାଡ଼ି ଯେବେ ହରଘଡ଼ି
ରସନା ଚାଖଇ ବିଷ
କରହେ ଛେଦନ କରୁଣା ନିଦାନ
ଥାଇ ଅବା ହେବ କିସ ? । ୪ ।

କର ଯୋଡ଼ି କର୍ତ୍ତାପଣ ଧରି ଯେବେ
କର୍ମ କଲେ ଦିବାନିଶି
କାଢ଼ିନିଅ କର୍ତ୍ତାପଣ ପ୍ରଭୁ ତା'ର
ଶ୍ରୀହସ୍ତରେ ଧରି ଅସି । ୫ ।

କୁପଥ ଗମନ କଲେ ହେଁ ବାରଣ
ଏ ମୋର ବେନି ଚରଣ
ନ ମାନିଲେ ବୋଲ ଯେବେ ଆଦିମୂଳ
ବ୍ୟଗ୍ରେ କରହେ ଛେଦନ । ୬ ।

ଜୀବନ ତଟିନୀ ତବ ପ୍ରେମ ସିନ୍ଧୁ
ଭେଟିବାରେ ଯେବେ ଆଶା
- ନାହିଁ, ନୀର ଧାର ଶୁଖାଅ ତାହାର
ନ କର ଆଉ ବରଷା । ୭ ।

ବଢ଼ିଲା ବୟସ ଅରକ୍ଷିତ ଦାସ
କରିବ କେତେ ପ୍ରତୀକ୍ଷା ?
ଶେଷ ନାହିଁ କିବା ପ୍ରତୀକ୍ଷାରେ ସତେ
ଆସ ଆସ ଗିରିଟେକା । ୮ ।



# ହେ ଶରଣଦ ଠାକୁର !

ହେ ଶରଣଦ ଠାକୁର !
ଦୀନ ଜନ ବନ୍ଧୁ ହେ କରୁଣା ସିନ୍ଧୁ
ହେ ଅଭିନ୍ନ ମୋହନ ସୁନ୍ଦର । ୦ ।

ଜଗନ୍ନାଥ ସ୍ୱାମୀ ନୟନ ପଥଗାମୀ
ଭବତୁ ମେ' ପ୍ରାର୍ଥନା ମୋହର । ୧ ।

ହେ ଅନ୍ତର୍ଯ୍ୟାମୀ ହେ ନିଖିଳ ସ୍ୱାମୀ
ହେ ପରମ ପୁରୁଷ ଈଶ୍ୱର । ୨ ।

ସତ୍ୟ ସନାତନ ଅନାଦି ନିରଞ୍ଜନ
ପୂରି ରହିଅଛି ସାରା ବିଶ୍ୱର । ୩ ।

ଜ୍ଞାନ ଭକ୍ତି ଦାୟକ ହେ ଜଗତ ପାଳକ
ହୁଅନା ମୋ ପାଇଁ ପ୍ରଭୁ ନିଷ୍ଠୁର । ୪ ।

ହେ ନାରାୟଣ ଗୁଣୀ ଗୁଣ ନିର୍ଗୁଣ
ସଗୁଣ ସାକାର ସବୁ ପ୍ରକାର । ୫ ।

ହେ ଆତ୍ମାରାମ ଜୟ ଜୟ ଅଭିରାମ
ତୁମ ବିନା ଅସାର ଏ ସଂସାର । ୬ ।

ଅରକ୍ଷିତ ଦାସକୁ ନିଅ ପାଦ ତଳକୁ
ଚାହଁ ଥରେ ପ୍ରଭୁ କୃପା ନେତ୍ରର । ୭ ।



# ତୁମ୍ଭ ବିନା ଏ ଜଗତେ

ତୁମ୍ଭ ବିନା ଏ ଜଗତେ ନାହିଁ ଚିର ଶାନ୍ତି,
ତୁମ୍ଭ ବିନା ଏ ଜଗତେ ନାହିଁ ଗତି ମୁକ୍ତି ।
ତୁମ୍ଭ କୃପା ବିନା କେହି ହୋଇନି ମହତ,
ତୁମ୍ଭ କୃପା ବିନା କେହି ଭୁଲିନି ଜଗତ ।

ଆତ୍ମ ତତ୍ତ୍ୱ ତୁମ୍ଭ କୃପା ବିନା ଏ ସଂସାରେ,
ପାଇ ନାହିଁ କେହି, ବୁଝିନାହିଁ ଆପଣାରେ ।
ସୃଷ୍ଟିର ସୌନ୍ଦର୍ଯ୍ୟ କେହି କରିନି ଦର୍ଶନ,
ତୁମ୍ଭ କୃପା ବିନା ଆହେ ପ୍ରଭୁ ନାରାୟଣ ।

ନୟନ ମନ ପବିତ୍ର ହୋଇନି କାହାରି,
ପଡ଼ିନାହିଁ ଯା'ର ଶିରେ ତୁମ୍ଭ କୃପାବାରି ।
ବିଶ୍ୱାସ ଭକତି ଭରେ କାହାରି ହୃଦୟ,
ହୋଇନି ଆପ୍ଲୁତ ଆହେ ପ୍ରଭୁ ଦୟାମୟ ।

ସଭିଙ୍କୁ ଆପଣା ଜ୍ଞାନ କରିନାହିଁ କେହି,
ତୁମ୍ଭ କୃପାଲୋକ କେବେ ନ ପାଇଛି ଯେହି ।
ତୁମ୍ଭ କୃପା ବାୟୁ ବହି ନାହିଁ ଯା' ଜୀବନେ,
ଦୁର୍ଲ୍ଲଭ ମାନବ ଜନ୍ମ ଗଲା ଅକାରଣେ ।

ଏତିକି ମାତ୍ର ପ୍ରାର୍ଥନା ତବ ଶ୍ରୀପୟରେ,
ତବ କୃପା ବୃଷ୍ଟି ହେଉ ଅରକ୍ଷିତ ଶିରେ ।



# ଆସ କରିବ ପ୍ରଭୁ ମଣୋହି

ଆସ କରିବ ପ୍ରଭୁ ମଣୋହି,
ଯାହା ଦେଇଛ ଦେବି ଭୁଞ୍ଜାଇ । ୦ ।

ସ୍ୱାଦୁ ପରମାନ୍ନ ନାନାଦି ବ୍ୟଞ୍ଜନ କରିଅଛି ମୁଁ ରନ୍ଧନ,
ପାତିଛି ଆସନ ବସିବ ମୋ ଧନ ହୋଇଣ ହରଷ ମନ,
ସୁଶୀତଳ ଜଳେ ମେଣ୍ଟାଇବ ତୃଷା ରଖିଛି ସାଇତି ମୁହିଁ । ୧ ।

କେତେ ମିଠାଫଳ କରିଅଛି ଠୁଳ ଭୋଜନ ଶେଷରେ ଦେବି,
ଦଧି ଦୁଗ୍ଧ ସର ରଖିଛି ଅପାର ନିଜ ହାତେ ଭୁଞ୍ଜାଇବି,
ନ କର ଉଛୁର ଆସ ତରତର ବିଳମ୍ବରେ କାର୍ଯ୍ୟ ନାହିଁ । ୨ ।

ଶବରୀ ବିଦୁର ଭାବ ମୁହିଁ କାହୁଁ ପାଇବି କୁହତ ମୋତେ,
ଯଶୋମତୀ ମାଆ ସ୍ନେହେ କରୁ ଆଁ 'କାହ୍ନୁ' ଡାକିଦେଲା ମାତ୍ରେ,
ପାଇବୁ ମୋ' ଠାରୁ ମିଛେ ଆଶା କରୁ ଦେଇଥିଲେ ସିନା ପାଇ । ୩ ।



# ଆସ ହେ ପ୍ରଭୁ ଆସ ହେ !

ଆସ ହେ ପ୍ରଭୁ ଆସ ହେ !
ହୃଦ ସିଂହାସନେ ବସ ହେ । ୦ ।

ନେତ୍ର ଜଳେ ତୋ ଚରଣ
କରିବି ପ୍ରକ୍ଷାଳନ
ପିନ୍ଧାଇବି ମନଲାଖି ପୀତାମ୍ବରୀ ବାସ ହେ । ୧ ।

ତୋଳି ରଖିଛି ମୁଁ ବନଫୁଲ
ପିନ୍ଧାଇବି ଗୁନ୍ଥି କେତେ ମାଳ
କରରେ କଙ୍କଣ କଣ୍ଠରେ ଭୂଷଣ
ସଜାଇବି ଫୁଲ ବେଶ ହେ । ୨ ।

ଚାରୁ ଚନ୍ଦନ ଗୋଳି
ରଖିଛି ମୋ ଦୁଃଖି ସଂଖାଳି
କପାଳରେ ଟୋପି ଟୋପି ଦେଖି ଗୋପୀ
ଫୁଟାଇବେ ମୁଖେ ହସ ହେ । ୩ ।

ବାଛି ଆଣିଛି ମିଠାଫଳ
ମଣୋହି କରିବ ଗୋପାଳ
ବିଦୁର ଶବରୀ ଭାବର ଭିକାରୀ
ଦୀନ ଅରକ୍ଷିତ ଦାସ ହେ । ୪ ।



# ଧରି ବସିବ ଯେବେ ଦୋଷ ମୋହର

ଧରି ବସିବ ଯେବେ ଦୋଷ ମୋହର
କୁହ ପ୍ରଭୁ ! ମୁହିଁ ହେବି କାହାର ? । ୦ ।

ଜଗତେ ଅଛନ୍ତି ଯେତେ ବନ୍ଧୁ ସୋଦର
ସଂପଦର ସାଥୀ ସିନା, ନୁହନ୍ତି ମୋର
ମିଛ ମାୟା ସଂସାରରେ କେହି ନୁହେଁ କାହାର । ୧ ।

ଆଜନମ ଅପରାଧୀ ହୀନ ପାମର
ନାହିଁ ଜ୍ଞାନ ନାହିଁ ବୁଦ୍ଧି ଭକତି ମୋର
କୃପା ନେତ୍ରେ ଚାହଁ କରିନିଅ ଆପଣାର । ୨ ।

ଆସ ଆସ ଧନ ମୋର ଦୁଃଖୀ ସଙ୍ଖାଳି
ଅନ୍ତର ଲହୁଡ଼ି ସିନା ମୋର ଗଳାମାଳି
ତୋ ବିନା ଦିଶୁଛି ମୋତେ ଚଉଦିଗ ଅନ୍ଧାର । ୩ ।



ଶୁଭ କଥାକୁ ବ୍ୟଗ୍ରେ କର
ଅଶୁଭେ ହେଳା ହେଉ,
ସ୍ନେହ ରଖିଥିବ, ଯାଉଛି,
ବେଳ ନାହିଁ ତ ଆଉ ।।

# ତୋ ଆଖିରେ ଆଖି

ତୋ ଆଖିରେ ଆଖି ମିଶିଯାଉ ମୋର
ତୋ ବଇଁଶୀ ସୁରେ ସୁର
ଚରଣ ମୋ ଚଳୁ ତୋ ନୂପୁର ତାନେ
ନାଚିବି ସଙ୍ଗେ ତୋହର ..... ପ୍ରଭୁ !
ଏହି ଅନୁକମ୍ପା କର । ୦ ।

ଅଭିସାରିକାର ବେଶ ମୁଁ ସାଜିଛି
କୁଞ୍ଜବନେ ଆଗୁସାର
ତୋ ପ୍ରେମ ସାଗରେ ବୁଡ଼ିଯିବି ଯେବେ
ବଢ଼ାଇ ଦେବ ପୟର .... ମୁହିଁ
ଧରବି ହୃଦୟେ ମୋର । ୧ ।

ଆସ ଆସ ଧନ ମୋ ଜୀବ ଜୀବନ
ନ କର ଆଉ ଉଛୁର
ପାହିଲେ ରଜନୀ ଆସିବେ ସଜନୀ
ହେବେ ସପତଣୀ ମୋର .... କେତେ
ହେବ ଟୁପୁରୁ ଟାପର । ୨ ।

ଶ୍ୟାମ ଘନ ଅଙ୍ଗେ ମିଳିବ ସରାଗେ
ଅଭାଗିନୀର ଶରୀର
ପୁଲକ ଗଦ୍‌ଗଦେ ରୋମାଞ୍ଚିତ ହେବ
ନ ଫେରିବ ଆଉ ଘର .... ପ୍ରଭୁ
ଏତିକି ମିନତି ମୋର । ୩ ।



# ତୁମ ଦରବାରେ ସତ ମୁଁ କହୁଛି

ତୁମ ଦରବାରେ ସତ ମୁଁ କହୁଛି
ମିଛ ନାହିଁ ତିଳେ ହେଲେ ।
କରୁଣା ସାଗର କରୁଣାରେ ଊଣା
କରିବ ନାହିଁ ମୁଁ ଭାଳେ । ୦ ।

ତୁମକୁ ଲୁଚାଇ କିଛି ଲାଭ ନାହିଁ
ଲୁଚାଇବି ଅବା କାହିଁ ?
ଅନ୍ତରେ ବାହାରେ ତୁମେ ସବୁଠାରେ
ଅନ୍ତର୍ଯ୍ୟାମୀ ରୂପ ହୋଇ
ଏବେ ତୋ ବିଚାର ଶିରୋଧାର୍ଯ୍ୟ ମୋର
ଶରଣ ମୁଁ ପାଦତଳେ । ୧ ।

କରିଛି ଅନେକ ପାପ ମୁଁ ଜୀବନେ
ହିସାବ ରଖିନି ଯା'ର
କହି ବସିଲେ ବି ପାରିବିନି କହି
ପଡ଼େନା ମନେ ମୋହର
କହୁଛି ଏତିକି ମୋ ସମ ପାତକୀ
ନାହିଁ ଏହି ଧରାତଳେ । ୨ ।



# ତୁମେ ଜଗତ ନାଥ

ତୁମେ ଜଗତ ନାଥ .....
ତୁମେ ଜଗତନାଥ
ଗଢ଼ିଛ କେତେ ଯତନେ ସତେ
ତୁମର ଏଇ ଜଗତ । ୦ ।

କେତେ ବିଚାରି ଅଛ ତିଆରି
ଜୀବଟେ ନାହିଁ ମଣିଷ ପରି
ମଥାରେ ବୁଦ୍ଧି ଦେଇଛ ଭରି
କାମ କରିବାକୁ ହାତ । ୧ ।

ହୃଦୟେ ସତ୍ୟ ଶାନ୍ତି ପ୍ରେମ
ମୁଖେ ଦେଇଛ ତୁମରି ନାମ
ପାଦରେ ଗତି ମନରେ ଶକ୍ତି
ଆତ୍ମା ରୂପେ ବିରାଜିତ । ୨ ।



# ଭାଙ୍ଗିଯିବ ଦମ୍ଭ ତୋର

ଭାଙ୍ଗିଯିବ ଦମ୍ଭ ତୋର ଭାଙ୍ଗିଯିବ ମନରେ
ଭାଙ୍ଗିଯିବ ମୋହ ନିଦ୍ରା ଆସୁଛି ସେ ଦିନରେ । ୦ ।

ମିଛେ କହୁ ମୋର ମୋର ଦାରା ସୁତ ଧନରେ
ଯେ ଯାହା ବାଟରେ ଯିବେ ଦେଖିବୁ ନୟନରେ । ୧ ।

ଭାଙ୍ଗିଯିବ କୋଠାବାଡ଼ି ଗଢୁ ଯା ଯତନରେ
ଥାଏ ଯେବେ ଭୋଗିବାକୁ ନ ଥିବ ଜୀବନରେ । ୨ ।

ଜରା ବ୍ୟାଧି ଦାଉ ସାଧି ବଧିବେ ଜୀବନରେ
ନ ଥିବେ କେ ସାହା ଯାହା ପାଇଁ ଗଲା ଦିନରେ । ୩ ।

ଭଜ ଶ୍ରୀଗୁରୁ ଗୋବିନ୍ଦ ଭଜ ବୃନ୍ଦାବନରେ
ଭଜ ରାମ କୃଷ୍ଣ ହରି ହେବୁ ପରିତ୍ରାଣରେ । ୪ ।



ତୁ ଯାହା ଦେଇଅଛୁ ମୋତେ
ଦେଇ ନ ଜାଣେ ମୁହିଁ ତୋତେ ।
ଏଣୁ ତୋ ଧନ ନିଅ ତୁହି,
ସେବକେ କୃପା ନେତ୍ରେ ଚାହିଁ ।

# ତୁମ ହାତଗଢ଼ା ଫୁଲଟିଏ ଦେଇ

ତୁମ ହାତଗଢ଼ା ଫୁଲଟିଏ ଦେଇ
ପାଳୁଛି ମୁଁ ନୂଆ ବରଷ,
ତୁମରି ଚରଣେ ଢାଳି ଦେଇ ଲୁହ
ମାଗୁଛି ମୁଁ ତୁମ ଆଶିଷ । ୦ ।

ଦୁଃଖ ଯାତନାରୁ ମିଳୁ ହେ ମୁକତି
ଅନାହାରେ ପାହି ନ ଯାଉ କା' ରାତି
ଭାଙ୍ଗିଦିଅ ସବୁ ଭେଦଭାବ ପ୍ରଭୁ !
ଗଢ଼ିଦିଅ ଖାଲି ମଣିଷ । ୧ ।

ବାହୁରେ ଦିଅ ହେ ଅସୀମ ଶକତି
ମନରେ ସାହସ ବିଶ୍ୱାସ ଭକତି
ହୃଦୟେ କରୁଣା ଦୟା ଆଉ କ୍ଷମା
ସବୁରି ମୁଖରେ ହରଷ । ୨ ।

ଫଳ ଫୁଲେ ଧରା ହୋଇ ଯାଉ ପୂର୍ଣ୍ଣ
ଜଳେ ନଦ ନଦୀ ସୁବାସେ ପବନ
ତୁମ ଜୟ ଘୋଷ କରୁ ଦଶ ଦିଶ
ତୁମ ବିନା ବିଷ ପୀୟୂଷ । ୩ ।



# ହାତ ଦୁଇ ତୁମ ପାଦ ପରେ ଥିବ

ହାତ ଦୁଇ ତୁମ ପାଦ ପରେ ଥିବ
ମଥା ଥିବ ପାଦ ତଳେ
ସର୍ବାଙ୍ଗ ଶରୀର ଭୂମି ପରେ ଥିବ
ଥିବି ପ୍ରଣତ ମୁଦ୍ରାରେ
ସତେ କି ଏତିକି ବେଳେ, ମନ ଯିବ ଅନ୍ତରାଳେ,
କୃପା କଟାକ୍ଷରେ ଚାହିଁ ଦେବ ପ୍ରଭୁ ! ବିରାଜିବ ହୃଦସ୍ଥଳେ
ଯିବି ମୁହିଁ ପରପାରେ । ୧ ।

ହସି ମୁଁ ବରଣ କରିବି ମରଣ
ତୁମ ଶରଣରେ ଥାଇ
କାଟିବି ଜୀବନ ତୁମରି ସେବାରେ
ତୁମ ଗୀତ ଗାଇ ଗାଇ,
ନାଚୁଥିବ ମୋର ଡୋଳେ, ସମୀରର ତାଳେ ତାଳେ,
ଭୁଲିବନି କେବେ ଅଭୁଲା ସଙ୍ଗ ମୋ ଏତିକି ଅଳି ପୟରେ,
ନ କରିବ ପର ମୋରେ । ୨ ।

ଅଗୁରୁ ଚନ୍ଦନ ଫୁଲ ମହକରେ
ପୂରି ଉଠୁଥିବ ଘର
ଆଉ କାହା କଥା ନ ପଶିବ କର୍ଣ୍ଣେ
ସଭିଏଁ ହୋଇବେ ପର
ତୁମେ ଥିବ ମୋ ସଙ୍ଗରେ, ମୁହିଁ ଥିବି ତୁମ ପୁରେ
ପତି ପୁତ୍ର ସଖା ତୁମେ ସିନା ଏକା ମୁଁ ଥିବି ତୁମ ଭାବରେ
ତୋଳି ନେବ ଶ୍ରୀକରରେ । ୩ ।

# ତୋ ପଦ ପଙ୍କଜ

ତୋ ପଦ ପଙ୍କଜ ସୁରଭିରେ ମନ
ହେଉ ମୋର ସୁରଭିତ,
ତୋ ପଦ ପରଶେ ଏହି କଳେବର
ହେଉ ମୋର ପୁଲକିତ । ୦ ।

ତୋ ନାମ ଭଜନ କରୁଥାଉ ମୁଖ
ତୋ ଲୀଳା ସ୍ମରଣେ ମିଳୁଥାଉ ସୁଖ
ତୋ ଭକତ ମେଳେ ତୋ ବଡ଼ ଦେଉଳେ
ବାଜୁଥାଉ ଯୋଡ଼ା ବେତ । ୧ ।

ତୋ ଶରଧା ବାଲି ମୁଣ୍ଡେ ମୋର ପଡୁ
ତୋ' ଠାରେ ଶରଧା ବେଳୁ ବେଳ ବଢୁ
ତୋ କୃପାରେ ମୋର ସଂସାର ବନ୍ଧନ
ଛିଡ଼ି ଛିଡ଼ି ଯାଉ ନିତ୍ୟ । ୨ ।

ତୋର ଧଣ୍ଡା ମାଳ ଲମ୍ବିଥାଉ ଗଳେ
ତୋ ମହାପ୍ରସାଦ ପଡୁ ମୋର ଥାଳେ
ଜନ୍ମ ଜନ୍ମାନ୍ତର ଶୋଷ ମୋର ମେଣ୍ଟୁ
ପାଇ ତୋ ଚରଣାମୃତ । ୩ ।



# ଧନ ଆ’ ଆ’ ଆ’

ଧନ ଆ’ ଆ’ ଆ’, ଧନ ଆ’ ଆ’ ଆ’
ଧନ ଆ’ରେ ।
ଖାଲି ପଡ଼ିଛି ତୋ ଘର ବସି ଯାଆରେ । ୦ ।

ଅପଲକ ନେତ୍ରେ ଚାହିଁ ରହିଥିବି
ଶ୍ରୀମୁଖ ମଣ୍ଡଳ ତୋର
ଦେଖୁଥିବି ତୋର ଅଭିନବ ଶୋଭା
ଝରୁଥିବ ନେତ୍ରୁ ନୀର
କୋଳେ ଧରି ତୋତେ ଖୋଇ ଦେଉଥିବି
ଯେସନେ ଯଶୋଦା ମାଆରେ । ୧ ।

ଚନ୍ଦନ ଚର୍ଚ୍ଚିତ ବେଶ କରିଦେବି
ଗଳେ ଦେବି ବନମାଳ
ଶିରେ ଶିଖି ପିଛ କଟିରେ କିଙ୍କିଣୀ
କର୍ଣ୍ଣେ ମକର କୁଣ୍ଡଳ
କରେ ତୋ ମୁରଲୀ ପାଦରେ ନୂପୁର
ଧରି ମୁଖେ ତୋର ନାଆଁରେ । ୨ ।

ତୋ ଘର ବଇରୀ ରହିଛନ୍ତି ଘେରି
ଖୋଜୁଛନ୍ତି ସଦା ରାହା
ନ କର ତୁ ହେଳା ଆହେ ଚକାଡ଼ୋଳା
ତୁହି ଏକା ମୋର ସାହା
ଲୋମେ ଲୋମେ ମୋର ମୋ ପ୍ରାଣ ଠାକୁର
ପଶି ଯାଆ ବସି ଯାଆରେ । ୩ ।

# ଜୀବନର ସବୁ ସୁଖ

ଜୀବନର ସବୁ ସୁଖ ଦେଇଛି ଅଜାଡ଼ି
ଜୀବନର ସବୁ ଲୁହ ଦେଇଛି ନିଗାଡ଼ି
ତଥାପି ପାରିନି ପ୍ରଭୁ ଜୀବନ ସଜାଡ଼ି... ଯାଇଛି ବିଗିଡ଼ି । ୦ ।

ଅସଜଡ଼ା ଯନ୍ତ୍ର ଗୋଟି ସଜାଡ଼ି ବାଇବ
ଫିଙ୍ଗିଦେଲେ ତୁମେ ତାହା କାହାର ହୋଇବ ?
ଆସୁ ଯେତେ ଝାଞ୍ଜି ଅବା ବରଷାର ଝଡ଼ି
ଅନ୍ଧର ଲହୁଡ଼ି ମୋର ପାରିବିନି ଛାଡ଼ି ।
ତୋ ବଡ଼ ଦାଣ୍ଡ ଧୂଳିରେ ଯିବି ମୁହିଁ ଗଡ଼ି
ଶରଣ ପଶିଛି ଥରେ ନଯିବି ବାହୁଡ଼ି
ନ ଯିବି ବାହୁଡ଼ି । ୧ ।

କିଏ କହେ ଜୀବନଟା ନିରାଶାର ବାଲି
ମରୁ ମରୀଚିକା ସ୍ନେହ ପୀରତିଟା ଖାଲି
ମୋ ଆଖିରେ ତୁହି ଏକା ଆଶାର ଆଲୋକ
ତୁ ଥିଲେ ମୋ ଆଖି ଆଗେ ଭୁଲିବି ଭୂଲୋକ
ତୋ ହାତେ ଦେଇଛି ମୁହିଁ ଏ ରଥ ଦଉଡ଼ି
ପଡୁ ଖାଲ ପଡୁ ଢିପ ନ ଛାଡ଼ିବି ରଡ଼ି
ନ ଯିବି ମୁଁ ପଡ଼ି । ୨ ।

●

# କି ଯଶ ପାଇଲ

କି ଯଶ ପାଇଲ ଦେଇ ନେଇଗଲ
ଏ ତୁମ କେଉଁ ବିଚାର ?
କି ସୁଖ ପାଉଛ ଭକ୍ତକୁ କନ୍ଦାଇ
ଦୁଃଖ କି କପାଳ ଗାର ? । ୦ ।

ତୁମ ଇଚ୍ଛା ଯଦି ନ ଥିଲା ଦେବାକୁ
ଦେଉଥିଲ ବା କାହିଁକି ?
କରୁଣାରେ ଯଦି ବିଗଳିତ ହେଲ
ଭକତର ଦୁଃଖ ଦେଖି
(ତେବେ) କଳିକା ଛିଣ୍ଡାଇ ଭାଙ୍ଗିଲ କିମ୍ପାଇଁ
ଆଶା ନୂଆ ସକାଳର ? । ୧ ।

ଲେଖି ଲିଭାଇଣ ପାର ବୋଲି ତୁମେ
ଲେଖିଛ ତ ନିଜ ହାତେ
ଯେଉଁ କଥା ପଢ଼ି ଶୁଣି ଏ ଭକତ
ଶରଣ ତୋ ପାଦଗତେ
(ଏବେ) ତୁଟିଯାଏ ଯଦି ବିଶ୍ୱାସ ତୋ'ଠାରେ
ହେବ ସେ କେଉଁ କୂଳର ? । ୨ ।

ଏ ଅବସ୍ଥା ଦେଖି କିଏ ବା କାହିଁକି
ପଶିବ ତୋର ଶରଣ ?
ପ୍ରଭୁ ବୋଲି ତୋତେ ଡାକିବ କାହିଁକି
ପ୍ରଭୁ ପଣ ଅକାରଣ
ସମାଧିରେ କିବା ଲୁଚିଗଲ ସତେ
ଶୁଖାଇ କୃପା ନିର୍ଝର ? । ୩ ।

# ବହିବାକୁ ଦିଅ ଲୁହ

ବହିବାକୁ ଦିଅ ଲୁହ
　　ବହୁଛି ଯେତେ ।
ସହିବାକୁ ଦିଅ ଶକ୍ତି
　　ଦୁଃଖ ଜଗତେ,
　　　　... ଯାତନା ଯେତେ । ୦ ।

ପଥରୁ ନ ବହେ ପାଣି
ପଥିକ ପଥ ହୁଡ଼େନି
ଅମାନିଆ ଲୁହ ଧାର
　　(ଆଜି) ବାଧେନା ମୋତେ । ୧ ।

କହିବାକୁ ନାହିଁ କଥା
ଘୂରିବାକୁ ନାହିଁ ମଥା
(ଆଜି) ପଥର ହୋଇଛି ପାଣି
　　କୃପା ସରିତେ । ୨ ।

ଆନ ନ ଆସେ ମନକୁ
ଆନ ନ ଦିଶେ ନେତ୍ରକୁ
ନୟନ ପିତୁଳି ନାଚ
　　ଦୃଷ୍ଟି ଅଗ୍ରତେ । ୩ ।



# ପ୍ରେମର ପସରା ଖୋଲି

ପ୍ରେମର ପସରା ଖୋଲି ମୁଁ ବସିଛି
ତୁମରି ପରଶ ପାଇଁ,
ବିନିଦ୍ର ରଜନୀ ପାହି ପାହି ଆସେ
ଆଖି ପତା ଯାଏ ନଇଁ । ୦ ।

ବାସ ଚନ୍ଦନ ମୋ ବାସି ହୋଇଯାଏ
ମଉଳେ ଗଜରା ମାଳ
ଦୀପାଳି ତଇଳ ସରି ସରି ଆସେ
ସଳିତା ଭଜଇ କାଳ
ବାସର ଶେଯରୁ ବାସନା ଉଡ଼ଇ
ବିଳମ୍ବ ନ ପାରେ ସହି । ୧ ।

ପସରାରେ ଅଛି ନାନା ଜାତି ରସ
ପରଶେ ହେବ ସରସ
ନ ଆସିଲେ ତୁମେ ପଥ ଚାହିଁ ଚାହିଁ
ଅମୃତ ହୋଇବ ବିଷ
ପ୍ରାଣ ପକ୍ଷୀ ମୋର ଗୁମୁରି ଗୁମୁରି
କାନ୍ଦୁଥିବ କଇଁ କଇଁ । ୨ ।



# ନାଚ ନାଚ ନୟନେ ମୋର

ନାଚ ନାଚ ନୟନେ ମୋର
ନୟନ - ସୁନ୍ଦର
ଦିଅ ବଢ଼ାଇ ପାଦ ପଦ୍ମ
ବାନ୍ଧିବି ଘୁଙ୍ଗୁର । ୦ ।

ତୁ ନାଚିବୁ ଢଳି ଢଳି
ସଙ୍ଗେ ଘେନି ରାସେଶ୍ୱରୀ
ମଧୁର ମୂର୍ଚ୍ଛନା ତୋଳୁଥିବ
ବଂଶୀ ତୋର । ୧ ।

ବେଢ଼ିଥିବେ ବ୍ରଜବାଳୀ
ମଧ୍ୟେ ଥିବୁ ବନମାଳୀ
ଅପୂର୍ବ ଶୋଭା ଦିଶିବ
ରାସ ରଚିବୁ ତୋହର । ୨ ।

ବୀଣା ବାଉଥିବେ ବାଣୀ
ଭକ୍ତ ମୁଖେ ହରି ଧ୍ୱନି
ମର୍ଦ୍ଦଳ ବାଇବି ମୁହିଁ
ନୃତ୍ୟ ଛନ୍ଦରେ ତୋହର । ୩ ।



# ଯେତେ ଯେତେ ନାମ

ଯେତେ ଯେତେ ନାମ ଥିଲେ ବି ତୁମର
ତୁମେ ମୋ ଅଭିନ୍ନ ରାମ
ଯେତେ ଯେତେ ରୂପ ଥିଲେ ଥାଉ ପଛେ
ତୁମେ ନୟନାଭିରାମ । ୦ ।

ଦ୍ୱଇତ ଭାବରେ ରହିଛି ଅଜ୍ଞାନ
ଏକାକ୍ଷରେ ସିନା ଅଦ୍ୱୈତ ଦର୍ଶନ
ଟେକି ସମଦୃଷ୍ଟି କରିଛ ଏ ସୃଷ୍ଟି
ନିନ୍ଦା ସ୍ତୁତି ତୋ ସମାନ । ୧ ।

ଏକରେ ଅନେକ ଅନେକରେ ଏକ
କରେ ଦରଶନ ଯେ ତୁମ ସେବକ
ଲୋମେ ଲୋମେ ଯା'ର ଜାଗଇ ପୁଲକ
ଅନ୍ତରେ ଜାଗଇ ପ୍ରେମ । ୨ ।

କାହାରିକୁ ନିନ୍ଦା କରୁନାହିଁ ମୁହିଁ
କରି କିବା ଲାଭ କରିବି କିମ୍ପାଇଁ
ଅଳି ତୋ ପୟରେ ସବୁରି ଭିତରେ
ଦେଖୁଥିବି ଛବି ତୁମ । ୩ ।



# ତୁମ ଇଚ୍ଛା ବିନା

ତୁମ ଇଚ୍ଛା ବିନା ପତର ହଲେନା
ଜାଣି ଶୁଣି ମନ କାହିଁକି ଅଜ୍ଞାନ
କିଏ ବୁଝାଇବ ତାକୁ ତୁମ ବିନା । ୦ ।

ତୋ ଇଚ୍ଛାରେ ହୁଏ ଦୂବ ଦାରୁ
ତୋ ଇଚ୍ଛାରେ ଚୂନା ମହାମେରୁ
ତୋ ଇଚ୍ଛାରେ ପୂରେ ସାଗର ସରିତ
ତୋ ଇଚ୍ଛାରେ ହୁଏ ମାଟି ସୁନା । ୧ ।

ତୋ ଇଚ୍ଛାରେ ଆସେ ସୁଖ ଦୁଃଖ
ତୋ ଇଚ୍ଛାରେ ମିଳେ ସ୍ୱର୍ଗ ନର୍କ
ତୋ ଇଚ୍ଛାରେ ମିଳେ ବଇକୁଣ୍ଠେ ସ୍ଥାନ
ତୋ ଇଚ୍ଛା ନ ଥିଲେ ସବୁ ମନା । ୨ ।

ତୋ ଇଚ୍ଛାରେ ହୁଏ ଭଙ୍ଗା ଗଢ଼ା
ତୋ ଇଚ୍ଛାରେ ସୃଷ୍ଟି ଶୂନ୍ୟେ ଛିଡ଼ା
ଶୂନ୍ୟରେ କୁଳିଶ ପାତ କା'ର ମାଥ
କା' କପାଳେ ଉଡ଼େ କଳାକନା । ୩ ।



# ଭାବିଲେ ବସି

ଭାବିଲେ ବସି ଆସିବ ଭାବ
ଭାବୁଥାରେ ଭାବଗ୍ରାହୀ
ଭବ ସାଗରରୁ କରିଦେବ ପାରି
ଅଭାବ ରହିବ ନାହିଁ। ୦ ।

ଭାବ ବିନୋଦିଆ ଭାବେ ହୁଏ ଭୋଳ
ଭକତ ଭାବରେ ବହେ ତା' ଜଞ୍ଜାଳ
ଭାବେ ହୁଏ ବନ୍ଧା ଭାବେ ପାଦ ଛନ୍ଦା
ଭାବ କ୍ଷୀର ବସ୍ଥା ସେହି । ୧ ।

ଭାବ ଦିଆନିଆ କରେ ବାଛି ବାଛି
ଫୁଲ ସଙ୍ଗେ ଭାବ ଯେହ୍ନେ ମହୁମାଛି
ସରିଗଲେ ଭାବ କେବା ପଚାରିବ
ପଡ଼ି ରହିଥିବୁ ତୁହି । ୨ ।

ଭାବେ ହୁଏ ଗଙ୍ଗା ଗଡ଼ିଆର ଜଳ
ଭାବରେ ଭୁଞ୍ଜନ୍ତି ଦନ୍ତକ୍ଷତ ଫଳ
ଭାବ ସମୁଦ୍ରରେ ଭାଙ୍ଗେ ସେ ଲହଡ଼ି
ଭକ୍ତ କୋଳେ ପଡ଼େ ଡେଇଁ । ୩ ।



# ଭଜରେ ମନ ନନ୍ଦନନ୍ଦନ

ଭଜରେ ମନ ନନ୍ଦନନ୍ଦନ
 ସୁନ୍ଦର ଗିରିଧାରୀ,
ଭଜ ଗୋବିନ୍ଦ ଭଜ ମୁକୁନ୍ଦ
 ମାଧବ ଦଇତାରି । ୦ ।

ଲବଣୀ ଚୋର ରାଈ କିଶୋର
 ନଟ ନାଗର ହରି
ଛନ୍ଦା ପୟର ବସନ ଚୋର
 ଭକତ ମନୋହାରୀ । ୧ ।

ଯଶୋଦା ବାଳ ଗୋପ ଗୋପାଳ
 ବୃନ୍ଦାବନ ବିହାରୀ
ପୀତ ଦୁକୂଳ ମୟୂର ଚୂଳ
 ଯମୁନା କୂଳଚାରୀ । ୨ ।

ବଂଶୀ ବଦନ ରାଧା ମୋହନ
 ଭଜ କୁଞ୍ଜ ବିହାରୀ
ଜଗତ ଜନ ମନ ମୋହନ
 ଭକତ ହିତକାରୀ । ୩ ।



# ତୁମରି ଭଜନ ଗାଇବ ଯେଦିନ

ତୁମରି ଭଜନ ଗାଇବ ଯେଦିନ
ତୁମେ ନିଜେ ସୁର ଧରି,
ଶୁଣି ତନୁମନ ପୁଲକିତ ହେବ
ଅମୃତ ପଡ଼ିବ ଝରି । ୦ ।

ତୁମେ ନ ଗାଇଲେ ଗାଇବ କିଏ ସେ
ତୁମେ ନ ବାଇଲେ ବାଇବ କିଏ ସେ
କିଏ ତୁମ ବିନା ତୋଳିବ ମୂର୍ଚ୍ଛନା
ଝରାଇବ ନେତ୍ର ବାରି । ୧ ।

କିଏ ସରଜିବ ପ୍ରେମ ରସନିଧି
କେ ଅଛି ସଂସାରେ ତୋ ପରି ଦରଦୀ
କେ ବା ଜାଣେ ଭାବ ଭାବଗ୍ରାହୀ ବିନା
ପରସିବ ରସ ଭରି । ୨ ।

ତୁମରି ଭଜନ ଶୁଣିବାର ପାଇଁ
ତୁମରି ଭକତେ ଆସିବେ ଓହ୍ଲାଇ
ଜମିବ ଆସର ତାଳ ମୃଦଙ୍ଗର
ଗାଉଥିବେ ହରି ହରି । ୩ ।



# ଭାଗ୍ୟହୀନ ବୋଲି ଭାବିବି କାହିଁକି

ଭାଗ୍ୟହୀନ ବୋଲି ଭାବିବି କାହିଁକି
 ପାଇ ତୁମ୍ଭ ଦରଶନ,
ଉଦାସ ଆଖିରେ ଚାହିଁବି କାହିଁକି
 ପାଇ ପାଦତଳେ ସ୍ଥାନ । ୧ ।

ବରଦ ହସ୍ତ ତୋ' ଶିରେ ମୋର ଥାଉଁ
 ଲୋଡ଼ିବି କେଉଁ ଆଶ୍ରୟ,
ଭୟର କି ନାହିଁ ଭୟ ତିଳେ ହୃଦେ
 ଲଭିବାକୁ ପରାଜୟ । ୨ ।

ଚିନ୍ତାମଣି ମୋର ପାଶେ ପାଶେ ଥାଉଁ
 କି ଚିନ୍ତା କରିବି ବସି,
କାହା ପାଇଁ ଦୁଃଖ କରିବି ମୁଁ ମନେ
 କିଏ ଦେବ ହସ ଖୁସି । ୩ ।

ଆପଣାର ବୋଲି କିଏ ବା ମୋ ଅଛି
 ତୋତେ ଛାଡ଼ିଦେଲେ କହ,
ସଭିଏଁ ତ ପର କେ ନୁହେଁ ନିଜର
 ଖାଲି ମିଛ ଅଭିନୟ । ୪ ।

ତୁ ଯାହାର ସାହା ଆହେ ଚଉବାହା
 ଦୟାମୟ ନାରାୟଣ,
କାହାକୁ ବା ଡର କିବା ଭୟ ତା'ର
 ଯମର ଯହିଁ ବାରଣ । ୫ ।

# କୋଟି ଜନମର ସାଧନା

କୋଟି ଜନମର ସାଧନା ଫଳ ମୁଁ
ତୋ' ପାଦେ ଅରପି ଦେଲି,
କଥା ଦେ' ମୋତେ ଆର ଜନମକୁ
ହେବୁ ମୋର ପୁଅ ବୋଲି । ୦ ।

ମୁଁ ହେବି ତୋ ମାଆ ତୁ ହେବୁ ମୋ' ରାହା
ଅନ୍ଧର ଲହୁଡ଼ି ତୁ ହେବୁ ମୋ ସାହା
ପଡ଼ିଲେ ମୁଁ ଝୁଣ୍ଟି ଉଠାଇ ନେବୁଟି
ଆହା ପଦେ କହି ଆଉଁସିବୁ ପିଠି
ଝାଡ଼ି ଦେବୁ ଧୂଳି ବାଲି । ୧ ।

ମାନୁଛି ମୁଁ ହୋଇ ପାରିବିନି ରାଧା
ଅବା ନନ୍ଦରାଣୀ ବାୟାଣୀ ଯଶୋଦା
କଉଶଲ୍ୟା ସିନା ପାରିବିନି ହୋଇ
ଥନ ଭାଙ୍ଗି କ୍ଷୀର ପାରିବି ତ ଖୋଇ
କହି ଦେ' ଆସିବୁ ଖାଲି । ୨ ।

ତୋ' କଥାରେ ଅଛି ମୋ' ପୂର୍ଣ୍ଣ ଭରସା
ନିଦାଘ ଶେଷରେ ଯେପରି ବରଷା
ଦିନ ପରେ ରାତି, ରାତି ପରେ ଦିନ
ସୁଖ ଦୁଃଖ ଯେହ୍ନେ ବିଧିର ବିଧାନ
ଭରିଦେ' ଧରିଛି ଝୁଲି । ୩ ।



# ତୁ ସୁନାପିଲା ପରି

ତୁ ସୁନାପିଲା ପରି ମୋ ବୋଲ ମାନିଲେ
ମୋ' କଥା ମାନିଲେ, ଚଗଲା ନ ହେଲେ
ଆଣିଦେବି ତତେ ପୁନେଇଁ ଚାନ୍ଦ ଆକାଶେ ଉଇଁଲେ । ୦ ।

କରିବୁନି ଚୋରି ସରଲବଣୀ
ଧରବୁନି କା'ର ପଣତ କାନି
ଭାଙ୍ଗିବୁନି କା'ର ଦୁଧ ମାଠିଆ
ଗାଧୁଆ ତୁଠରେ ହେବୁନି ଠିଆ
ଦେହ ଛୁଇଁ ମୋର କଥା ତୁ ଦେଲେ, ମୋ ରାଣ ଖାଇଲେ
ଆଣିଦେବି ତତେ ପୁନେଇଁ ଚାନ୍ଦ ଆକାଶେ ଉଇଁଲେ । ୧ ।

ସଞ୍ଜ ନ ହେଉଣୁ ଆସିବୁ ଫେରି
ଗୋ ଗୋଷ୍ଠରୁ ଧନ ଗୋଧନ ଧରି
ବଡ଼ ଭାଇ ବଳରାମ ସାଥିରେ
କରିବୁନି କଳି ଆସିବୁ ଧୀରେ
ଦେହ ଛୁଇଁ ମୋର କଥା ତୁ ଦେଲେ, ମୋ ରାଣ ଖାଇଲେ
ଆଣିଦେବି ତତେ ପୁନେଇଁ ଚାନ୍ଦ ଆକାଶେ ଉଇଁଲେ । ୨ ।

ଆଉ କେବେ ନ ଖାଇବୁ ତୁ ମାଟି
ଆଉ ନ ଚିରିବୁ ବକାର ପାଟି
ଆଉ ନ କରିବୁ କାଳି ଦଳନ
ଆଉ ନ ଟେକିବୁ ଗୋବରଧନ
ଦେହ ଛୁଇଁ ମୋର କଥା ତୁ ଦେଲେ, ମୋ ରାଣ ଖାଇଲେ
ଆଣିଦେବି ତତେ ପୁନେଇଁ ଚାନ୍ଦ ଆକାଶେ ଉଇଁଲେ। ୩ ।



# ଆଣିନି ଅଗୁରୁ ମୁଁ

ଆଣିନି ଅଗୁରୁ ମୁଁ ଯେ ଆଣିନି ଅତର
ଘୋରିନି ଚନ୍ଦନ ଅବା ଧରିନି ଚାମର
କି ସେବା କରିବି ପ୍ରଭୁ ! ଚନ୍ଦନ ଯାତର । ୦ ।

ଭାଙ୍ଗି ନାହିଁ ଖିଲିପାନ ଦେଇ ମୁଁ ଲବଙ୍ଗ
ଜାଣେନା ମୁଁ ନାଚି ଗାଇ ବଜାଇ ମୃଦଙ୍ଗ
ତୋଳି ମୁଁ ରଖିନି ଫୁଲ ବିଞ୍ଚିବାକୁ ପଥେ
ସୁବାସିତ ଜଳ ପିଚକାରୀ ନାହିଁ ହାତେ
ବନ୍ଦାପନା ଥାଳି ନାହିଁ ଦୂର୍ବା ଅକ୍ଷତର
କି ସେବା କରିବି ପ୍ରଭୁ ! ଚନ୍ଦନ ଯାତର । ୧ ।

ପଶି ମୁଁ ପାରୁନି ପ୍ରଭୁ ଭିଡ଼ର ଭିତରେ
ନିରେଖୁଛି ମୁଖ ଶୋଭା ଥାଇ ମୁହିଁ ଦୂରେ
ସାଧୁ ସନ୍ଥ ଭକ୍ତ ମେଳେ ହୁଏ ଚାପଖେଳ
ପ୍ରେମାଙ୍ଗୀ ଭକତ ଭାବେ ହେଉଥାନ୍ତି ଭୋଳ
ଶ୍ରୀଅଙ୍ଗ ସୁବାସେ ପୁଲକିତ ଏ ଶରୀର
ଭିଜିଯାଏ ସର୍ବାଙ୍ଗ ମୋ ବହେ ପ୍ରେମନୀର । ୨ ।



# ସାଗର କୂଳେ ମୁଁ ଲହଡ଼ି ଗଣୁଛି

ସାଗର କୂଳେ ମୁଁ ଲହଡ଼ି ଗଣୁଛି
　　ତୋ କୃପା ପାଇବା ପାଇଁ
ହେ କୃପା ସାଗର କୃପା ପାରାବାର
　　ଯୋଗ୍ୟତା ବା ମୋର କାହିଁ ? । ୦ ।

ଦେଖିବ ଯେ ମୋତେ ହସି ଉଡ଼ାଇବ
　　କହିବ ମୋତେ ପାଗଳ
ଭଲ ମନ୍ଦ ହାନି ଲାଭ ନ ଜାଣଇ
　　କରୁଛି କର୍ମ କେବଳ
ତୋ' କୃପା ହୋଇଲେ ଫିଟିବ ମୋ ଭାଗ୍ୟ
　　ବହିବ ଉଜାଣି ବାଇ । ୧ ।

ବାଇଆ ଠାକୁର ବାଇ ତୁ ହୋଇଲୁ
　　ବାଇ କରିଲୁ ସଭିଙ୍କୁ
ବୁଡ଼ାଇ ଉଠାଇ ପାଣି ପିଆଇଲୁ
　　ଟାଣି ନେଲୁ ତୋ ପାଖକୁ
କିବା ସାଧ ମୋର ହେ କୃପାସାଗର
　　ସାଧ ସାଧନ ମୋ ତୁହି । ୨ ।





ଲେଖକ ପରିଚୟ - **ଶ୍ରୀ ପ୍ରତାପ କିଶୋର ପଟ୍ଟନାୟକ,** ପିତା - ଶ୍ରୀ ଘନଶ୍ୟାମ ପଟ୍ଟନାୟକ, ମାତା - ଶ୍ରୀମତୀ ସୁଲୋଚନା ପଟ୍ଟନାୟକ, ଜନ୍ମସ୍ଥାନ - ବଳରାମପୁର ତଳଗଡ଼, ଜିଲ୍ଲା - ଯାଜପୁର, ଜନ୍ମ ତାରିଖ - ତା ୧.୧.୧୯୫୨ , ଶିକ୍ଷାଗତ ଯୋଗ୍ୟତା - ଆଇ.ଏ. ।

ସ୍କୁଲ ଓ ଗଣଶିକ୍ଷା ବିଭାଗ ଅଧୀନରେ ଅଫିସ ସହାୟକ ଭାବେ କାର୍ଯ୍ୟ କରି ୨୦୧୨ ଫେବୃୟାରୀରେ ଅବସର ଗ୍ରହଣ କରିଛନ୍ତି ।

**"ଆରାଧନା"** ଶ୍ରୀ ପଟ୍ଟନାୟକଙ୍କର ପ୍ରଥମ ପ୍ରକାଶିତ ପୁସ୍ତକ । ସେ ଆକାଶବାଣୀର ଜଣେ ସ୍ୱୀକୃତିପ୍ରାପ୍ତ ଗୀତିକାର । ଗଳ୍ପ, କବିତା, ଶିଶୁ ସାହିତ୍ୟ ଓ ଧର୍ମ ସଂପର୍କୀୟ ଆଲୋଚନା କ୍ଷେତ୍ରରେ ମଧ୍ୟ ସେ ଲେଖନୀ ଚାଳନା କରନ୍ତି । ଆଗକୁ ପ୍ରକାଶ ଅପେକ୍ଷାରେ ରହିଛି ତାଙ୍କର ପୂଜ୍ୟ ଗରୁଦେବ ଠାକୁର ଶ୍ରୀ ଶ୍ରୀ ଅଭିରାମ ପରମହଂସଙ୍କ ଲୀଳାନୁଭୂତି ସମ୍ବଳିତ ପୁସ୍ତକ "ଅନୁଭବକୁ ସତ୍ୟ କହି" ।